ଦଦା ଓ ବୋଉଙ୍କ ପବିତ୍ର ସ୍ମୃତିରେ

—ଲୁନ ॥

ଭବକୁ ନିକଟ : କାହାଣୀ-ସଙ୍କଳନ ॥ ଲେଖିକା : ଉତ୍କଳିକା ଦାସ ॥ ପ୍ରକାଶକ : ସୁରେନ୍ଦ୍ର ନାଥ ଜଗଦ୍ଦେବ, ମହାନଦୀ ବୁକ୍ସ୍, ପ୍ଲଟ୍ ନଂ. ୩୮୩୫/୨୦, ମୂଲ୍ୟାୟନ ବିହାର, ଗଡ଼ଗୋପୀନାଥ ପ୍ରସାଦ ନ୍ୟୁ କଲୋନୀ, ଭୁବନେଶ୍ୱର-୭୫୧ ୦୧୦ ॥ ମୁଦ୍ରଣ : ଅଦ୍ୱୈତ ପ୍ରିଣ୍ଟର୍ସ, ଅଲିସାବଜାର, ମଙ୍ଗଳା ସାହି, କଟକ-୭୫୩ ୦୦୨ ॥ ପ୍ରଚ୍ଛଦ-ଅଙ୍କନ : ଉଦୟ ଜେନା ॥  ପ୍ରଥମ ପ୍ରକାଶ : ବିଜୟା ଦଶମୀ, ୨୯ ସେପ୍ଟେମ୍ବର, ୧୯୯୦ ॥

**BHABAKU NIKATA** : A Volume of Stories in Oriya by *Utkalika Das*. First Published : Vijaya Dasami Day : 29 September, 1990. Published by Surendra Nath Jagadeb, Mulyayana Vihar, Plot No. 3835/20, GGP New Colony, Bhubaneswar-751 010, India.  Bound at Sujata Binders, Alisa Bazar, Cuttack 2

ମୂଲ୍ୟ : ତିରିଶ ଟଙ୍କା ॥ Price : Rs. 30. 00/Eight Dollars/Three Pounds.
ସାଦା ମଲାଟ ସଂସ୍କରଣ : କୋଡ଼ିଏ ଟଙ୍କା ॥

## କୃତଜ୍ଞତା

ଏ ସଙ୍କଳନର କାହାଣୀଗୁଡ଼ିକ **ବାଇଶି ପାହାଚ, ସୁଚରିତା, କଥା, ସଂଯୋଗ, ଆବର୍ତ୍ତ, ଅସନ୍ତାକାଲି, ସ୍ତୁଭଣୀ, ସୁଧନ୍ୟା, ପ୍ରଗତିବାଦୀ** ଆଦି ପତ୍ରପତ୍ରିକାରେ ପ୍ରକାଶ କରି ସମ୍ପାଦକ ଓ ସମ୍ପାଦିକାମାନେ ମତେ କୃତଜ୍ଞ କରିଛନ୍ତି ।

ଯଶସ୍ୱୀ କବି ଓ ସହୃଦୟ ସମାଲୋଚକ ଶ୍ରୀ ସୌରୀନ୍ଦ୍ର ବାରିକ କାହାଣୀ ଗୁଡ଼ିକ ପଢ଼ି, ଏଥି ସହିତ ସଂଯୋଜିତ 'କଣ କହିବ ?' ଲେଖାରେ ନିଜର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ସମାଲୋଚକ ଓ ସାହିତ୍ୟ ସେବକ, ଶ୍ରୀ ପ୍ରଫୁଲ୍ଲ କୁମାର ଜଗଦେବ, ଏହାର ପ୍ରକାଶନ ଦାୟିତ୍ୱ ନେଇଛନ୍ତି । ଏ ଉଭୟଙ୍କ ନିକଟରେ ମୁଁ ଋଣୀ ।

—ଉତ୍କଳିକା ଦାସ
୦୫ । ୦୬ । ୧୯୯୦

# ସୂଚୀ

# ବନସ୍ତେ ଅଜଗର ପ୍ରାୟେ

ସୂର୍ଯ୍ୟଦେବତା ମା କୋଳକୁ ଯାଉଛନ୍ତି । ସଞ୍ଜ ହୋଇଆସୁଛି । ମାନମା ଡାକୁଛି ଜେଜେମାଙ୍କୁ ତାର,

"ମା'ମ ! ଆସ ଗୋଟେ ଗପ କୁହ ମା' ।"

ତୁଳସୀ ମୂଳେ ସଞ୍ଜ ଦେଇ ଜୁହାର ହେଇସାରି କଅଣ କହୁଛନ୍ତି ଟୁପୁ ଟୁପୁ ହେଇ । ଅଡ଼ଙ୍ଗ କଣକୁ ଆସନ ବିଛାଇ ଦେଇ ମା ବସିବାକୁ ଯାଉଛନ୍ତି ମାଳଧରି ଜପ କରିବାକୁ, ମାନମା ପୁଣି କହିଲା,

"ମା' ଗୋଟେ ଗପ କୁହ କହୁଛି ପରା ।"

"ହଉ ! କହୁଛି ଶୁଣ୍ । ଆ, ମୋ ପାଖକୁ ଘୁଞ୍ଚିଆ ।"

ମାନମା ପାଖରେ ବସିଲା, ମା' କହିଲେ

"କି ଗପ ଶୁଣିବୁରେ ମାନ ! ଦୁଃଖ କହିବି ନା ସୁଖ କହିବି ? ଅଙ୍ଗେ ନିଭେଇବା ଅନୁଭବ କହିବି । ଜପ ସାରି ଦେଇଥାନ୍ତି, ତୁ ନା ! ଆଗେ କୁହ, ପଛେ ଜପ କରିବ ବୋଲି ହଠି ବସିଲୁ ।

"ତୋ ଜେଜେବାପା ବଡ଼ ମଣିଷଟେ ଥିଲେ । ମୁଁ ତାଙ୍କର କାଖତଳକୁ ହଉଥିଲି । ସେ ବେଶି ପାଠପଢ଼ୁଆ ନ ଥିଲେ । ଆମର ଜମିବାଡ଼ି ଥିଲା । ଚାଷ କରୁଥିଲେ । ହଳିଆମାନେ ଥା'ନ୍ତି ।

"ସେମାନେ ଚାରିଭାଇ ଥିଲେ । ଇଏ ଆମର ସାନ ସବୁଠୁଁ । ଜଣେ ଦେଢ଼ଶୁର ମୋର ଭଲ ପାଠ ପଢ଼ିଥାନ୍ତି । ସେ ବାହ୍ୟା ହୋଇଗଲେ । ତାଙ୍କର ଚାଷଘର ହେଇନଥିଲା । ଶାଶୁମୋର ଥିଲାବେଳେ ତାଙ୍କ କଥା ବୁଝୁଥିଲେ ।

"ଦିନେକର ବାରପଟେ ମୁଁ ଗାଧୋଉଥିଲି, ସେ ହଠାତ୍ ଚାଲି ଅସିଲେ ମୋ ପାଖକୁ । ଏ ମା' ! ମୁଁ ଆଉ କୁଆଡ଼େ ଯିବି ! ମେଞ୍ଚହୋଇ ବସି ପଡ଼ିଲି । ଦେଖୁ ଦେଖୁନେ ମା, ତୋ ଜେଜେ ସେତିକିବେଳକୁ ଆସି ପହଞ୍ଚି ଗଲେ । ହଳିଆ ବାଡ଼ିରେ ପିଟି ଦେଇଗଲେ—ଏ କ'ଣ କଲୁ ! ଦେଖିବୁ, ଆଉଦିନେ ଛୁଇଁଥିବୁ ତୋ ଜୀବନ ନେଇଯିବି । ତା'ର ଭିତରେ ମୁଁ ଦେଢ଼ଶୁର ଛୁଆଁ ବୋଲି ଦଗଣ୍ଡ ପାଣି ଢାଳିହେଇ ଗମ୍ଭୀର ଭିତରେ ଗୋଟାପଣେ ଅଛୁଛି । ଗୋଟାପଣେ ନେଇ ପଡ଼ିଗଲିଣି । ଇଏତ ହଳିଆ ! ମାରୁ ମାରୁ ମାରିଦେବେ ଯେ ! ହଳିଆ ଦିହେଁ କଏ ଆଉ ପାଖେ ପଶୁ ନାହାନ୍ତି । ମୁଁ ଖାଲି ଠାକୁରଙ୍କୁ ଡାକୁଥାଏ — ଇଏ କିମିତ ଅଣ୍ଡା ହୁଅନ୍ତୁ । କେତେବେଳେ ଦୟା ଆସିଥିବ, ଯେତେହେଲେ ବଡ଼ଭାଇତ । ଆଉ ହାତ

ଉଠିନଥିବ । ମୋ କଳ୍ପନା ଟିକଏ ଉଷୁମ ହେଲା । ଗୋଡ଼ହାତ ଅସ୍ତ ଧରିଲା । ଇଏ ଦେଢ଼ଶୁରଙ୍କ ଗୁହାଳ ଭିତରେ ବସେଇ ଦେଇ କହୁଛନ୍ତି—ବସିଥା । ଏଠୁ ଉଠିବୁତ ଦେଖିବୁ ପୁଣି । ମୋ ପାଖକୁ ଆସିଲେ । ମତେ ଆଉଁସିଦେଲେ । ସେଠୁ ଯାଇ, ନଈକି ଯାଇ ଗାଧେଇ ଆସିଲେ । ମୁଁ ତାଙ୍କୁ ଖାଇବାକୁ ବାଢ଼ିଲି । ସେତ ଅଲପ ଖାଇବା ଲୋକ ନୁହନ୍ତି । ବଡ଼ କଂସାରେ କଂସାଏ ଭାତ, ବେଶର ଚଡ଼ଚଡ଼ିଏ, ବାରପ୍ରକାର ଭଜାଭଜି—କନ୍ଦମୂଳ ଭଜା, ବରଗୁଡ଼ି କଷି ଶାଗ ଖରଡ଼ା, ବୋଇତାଳୁ ଭଜା ।

"ଆମ ପଦରରେ ସେ ଜନେ ହଳଆଙ୍କୁ ଲଗେଇ ସବୁରକମର ଫଳମୂଳ କରନ୍ତି । କନ୍ଦମୂଳ, ଦେଶୀ ଆଳୁ, ବାଇଗଣ, ସାରୁ । ଆଖୁ କରଆନ୍ତି । ଗୁଡ଼ ହୁଏ । ଗୁଡ଼ହାଣ୍ଡିରେ କନ୍ଦମୂଳ ପକେଇଦେଇ ମୋ ପେଇଁ ଆଣନ୍ତି । ସେ କନ୍ଦମୂଳ ଗୁଡ଼-ହାଣ୍ଡିରେ ସିଝିଥିଲକୁ ବଡ଼ ମିଠାଲାଗେ । ମୁଁ ତ ସବୁ ପ୍ରକାର ରାନ୍ଧେ । ମୋ ଶାଶୁ ପୂଜା ସାରି ବୃନ୍ଦାବତୀ ପୂଜା କରୁଥିବେ, ଅଧା ରନ୍ଧା ସରିଥିବ । କୋଡ଼ା ଚୁଲି ତରତର କରି ଭାତଗଣ୍ଡ ପଖାଳ ଦେବ । କାଞ୍ଜିପାଣି ଫୁଟୁଥିବ । ପଣବା ପକାଇ ଅଧାସିଝା ହୋଇଥିବ । ଶାଶୁ ଆସି ବସିବେ । ପିଢ଼ା ପକାଇ ଗୋଟେ ଘଡ଼ିକରୁ ବେଶି ବେଳ ବସି ଖାଉଥିବେ । ମୁଁ ବଢ଼ଉଥିବି । ସେ ଅଧାଖିଆ ବେଳକୁ ମୁଁ କାଞ୍ଜି ପରଶି ଦେବ । ଶାଶୁ ମୋର ଧୋବ ଫର ଫର ଲୁଗା ଖଣ୍ଡେ ପିନ୍ଧିଥିବେ । ପିଏ ଖାଇସାରି ଶୋଇବେ । ତା'ପରେ କିଏ କୁଆଡ଼େ ଥିବେ ଖିଆପିଆ ହବ ।"

ମାନଜମାର ଅଙ୍ଗୁଳ କମି ଆସିବ । ସବୁଦନେ ତା ବୋଉକୁ ଦେଖୁଛୁ । ମା'କୁ ଦେଖୁଛୁ ସବୁଦନେ ଏଇପରି କାମ । ବୋଉର ରନ୍ଧାବଢ଼ା । ମା'ଙ୍କର ପୂଜା, ଜପ । ରାନ୍ଧଣା ଆଉ ଖିଆପିଆର ଏକାପରି । ପଗୁରିବ,

"ଇଏ କି ଗପମ ମା' !"

ମା କହିବେ,

"ହଁଲୋ, ଗପ । କହୁଲି ପଗୁ, ଅଙ୍ଗେ ଲିଭାଇବା କଥା କହିବ ! ବଡ଼ ଗୁଳୁଗୁଳି ହଉଚନ୍ତେ ମା !"

ମାନଜୀ ପଗୁରିବ,

"ଗୁଳୁଗୁଳି କଅଣ ମା ?"

"ଝପଟୁ ଘିମିର ଗୁପ୍ ପିଠିରେ ଚଡ଼ଚଡ଼ ହଉଛୁ ।"

ମୋରତ ଘିମିର ହେଇନ ।"

''ତୋର ଚକ୍‌କଣ ହସ । ତୁ କଣ ନଈଁ ପାଖରେ କାମ୍ କରୁଛୁ କି ?''

''ତମେ କ'ଣ ନଈଁ ପାଖରେ କାମ କରୁଛକି ?''

''ହାଁରେ, ମୋ ବୋହୂତ ସବୁ କରୁଛି ।''

''ତମର କାହିଁକି ହେଉଛି ?''

''ତଳଲା ପବନକୁ ।''

''ଘିମିର କମିଛ ଭଲ ହବ ?''

''ଚନ୍ଦନ ଘେ ଷ ଲଗାଇଲେ ଭଲ ହବ । ବରଷା ହେଲେ ମେଘପାଣି ଦେହରେ ଲଗାଇଲେ, ଶୀତଳ ବାଆ ବାଜିଲେ ସବୁ ଶୁଖି ଖେପା ଛାଡ଼ିଯିବ ।''

''ବାଆ କଅଣ ?''

''ବାଆ ? ପବନ''

ହସେଇ ଦେଇ ମା' ପଢ଼ିଲ ବୋଲିବେ;

''ନଶିଶେଷେ ପଠ ପାଶେ
ବୋହୂ ମନେକଲେ ଶ୍ୱଶୁର ପାଶେ

''ଭୀମଙ୍କ ପାଖେ ଦ୍ରୌପଦୀ । ରାତି ପାହୁ ଅସୁଛି । ବଡ଼ ଗୁଳଗୁଳ ହଉଛି । ଦ୍ରୌପଦୀ କହିଲେ ବାଆ ବହିଯା ନାହିଁ । ବାଆ ହେଲ ପବନ । ପବନ ଭୀମର ବାପା । ଦ୍ରୌପଦୀଙ୍କ ଶ୍ୱଶୁର ।''

ସେଇଠୁ ନିଜ ମହାଭାରତକୁ ନେଉଛି ଆସନ୍ତି ମା' ।

''ଇଏତ ଆମର ବଡ଼ ମଣିଷ ଥିଲେ । ବହୁତ ଖାଁନ୍ତି । ବହୁତ କାମ କରନ୍ତି । ଦିନେ ରାତିରେ ସ୍ୱପ୍ନ ଦେଖିଲେ, ମୋ ସାନପୁଅ ଜନ୍ମହେବା ଆଗରୁ ପୁଅଟିଏ ହବ । କୁଳଦୀପକ ହବ । ନା ରଖିବ । ତା ନାଁ ରଖିବୁ ମହେନ୍ଦ୍ର । ମହେନ୍ଦ୍ର ପର୍ବତରେ ପତାକା ବାନ୍ଧିବୁ । ନିଦ ଭାଙ୍ଗିଗଲା ।

''ସେ ମତେ ସବୁ କହିଲେ । ମୋ ସାନପୁଅ ଜନ୍ମହେଲା । ପାଦଦେଇ ଜନ୍ମ ହେଲା । ଆମ ଢେଙ୍କିଶାଳରେ । ମୁଁ ମରୁ ମରୁ ବଞ୍ଚିଲି । ଘଣ୍ଟକରେ ଯାଇ ମୁଣ୍ଡ ବାହାରିଲା । କେଡ଼େ ସୁନ୍ଦରଟିଏ । ଦୋଷ ତକତକ ହେଉଥିଲା । ତାର ନାକକାନ ବନେଇଦେଲି ଅପରାଧୀଆଣି ବୋଲି । ଚନ୍ଦ୍ର-ହୁଦଥା ପଣ ବଢ଼ିଲା । ସୁନାବର୍ଣ୍ଣ ସୁନାମାସ ସୁନାଦିନ ପଶିଲା । ତା ବାପ ଗୁଣ୍ଟଶାଳୀକୁ

ନେଇଗଲେ । ନୂଆଖଡ଼ି, ନୂଆପଟା କିଣିଦେଲେ । ଅବଧାନଙ୍କ ପାଖରେ ସଁପି ଦେ[illegible]ନି—ଏଣିକି ବିଦ୍ୟା ଦାୟିତ୍ୱ ଆପଣଙ୍କର କହୁ, ଆସିଲେ । ପୁଅ ମୋର ସବୁ ପିଲାଙ୍କଠୁ ବଳିଗଲା ପାଠରେ । ଅବଧାନ ଭଲ ପଢ଼ାଇଲେ ।

“ଦିନେକର କଅଣ ହେଲୁନା—ପୁଅ ମୋର ସାତବରଷର ହେଇଛି, ମୋ ସହିତ ଅଝଟ ଲଗାଇଲା । ମୁଁ କ'ଣ କାମରେ ଲାଗିଥିଲି । ଘିଅ ଫୁଟୁଛି । ଯାଇକରି ଭାତହାଣ୍ଡିକି ପିଟିଦେଲା । ତା ବାପାତ ଆସି ସେଇ କାଠଫାଳିଆ ଧରି ପିଠିକି ପିଟିଦେଲେ ଯେ ଛଟପଟ ହେଇ ଭୂଇଁରେ ଗଡ଼ିଗଲେ । ମୋର ଆଉ କି ସ୍ୱଗ ଅଛି ! କାଠ ଭଜାଆ ଠିଆ ହୋଇଛି । ତା'ପରେ ପୁଅକୁ ଧରି କୁଣ୍ଢେଇ ପକେଇଲେ । ଯେତେ ବସ୍ତାପି ହେଲେ ! କାନ୍ଦଲେ । କଥାରେ କହନ୍ତିନା—ମାଈ ଜାଉ ଅଯୋଗ୍ୟ ହାତ ଧଇଲେ ମଲା, ଅଯୋଗ୍ୟ ଉପୁଜେଇଲେ ମଲା ।

“ଆଉ ଦିନକରଲେ ମା', ଉଳସାଉ ମ ! ତୁ ଜାଣିବୁ ନେଇଁ—ସେ ଆସି ଡାକିଲା—ଆ ! ଏ ମହୁଆ, ନଈକି ଯିବା ଗାଧୋଇ । ତା ସାଙ୍ଗକୁ ଆହୁରି କେତେ ସାଙ୍ଗସାଥୀ ଜୁଟିଗଲେ । ନଈକି ଗାଧୋଇ ଗଲେ । ମୁଁ ଏଣେ ଅନାଇଁ ବଇଚ—ପୁଅ ମୋର ଆସିଲେ ଖାଇବ । କି ଦୁର୍ଯୋଗ ଥିଲା । ଏ ଦୁଷ୍ଟପିଲା ସବୁ ମେଳ ହୋଇ-ଥିବେ । ନଈପାଖରେ ଆମ୍ବତୋଟାରେ ମାଙ୍କଡ଼—ପାଉମାଙ୍କଡ଼କୁ ଖେଡେଇ ହେଇଥିବେ । ଟେକା ଫୋପାଡ଼ିଥିବେ । ମାଙ୍କଡ଼ ଆସିଥିବେ । ସବୁ ପିଲାମାନେ ପଳାଇ ଆସିଥିବେ । ମୋ ପୁଅକୁ ତ ପୁଳାପୁଳାକରି କପାଳଯାକ କାମୁଡ଼ିଗଲେ । କିଏ ଜଣେ ବଡ଼ ମଣିଷ ମାଙ୍କଡ଼ ଘଉଡ଼ାଇଲା । ପୁଅକୁ କାଖରେ ଧରି ଆସିଲା । ପୁଅ ମୋର ନଈବାଲିରେ କେତେ ଗଡ଼ିଯାଇଥିବ । ଲହୁ ଲୁହାଣ ହୋଇଯାଇଛି ଯେତେ କୋଡ଼ିକସୁଡ଼ି ହେଲି । ବଣଲୁକରଣୀ କିଏ ଆଣିବାକୁ ଗଲା । ବଇଦ ଆସିଲେ । ଔଷଧ ଦେଲେ । ପଥିରେ ରଖିଲେ । କେତେ ନାରଖାର ହୋଇଗଲା । କେତେ ଦିନରେ ଘା ଶୁଖିଲା । ଛଏତ ମୋର ଅତି ଉଦାସ । ଦୁଷ୍ଟପିଲା ଗୁଡାଙ୍କ ସାଙ୍ଗରେ ପଢ଼ିଗଲା । ସେଇଠୁ ଚଟଶାଳୀ ଗଲା ।

“ତା ବାପା ଛଅବରଷଧରି ଶେଷ ସମୟରେ ଶେଯରେ ପଡ଼ି ରହିଲେ । ଏକଅଙ୍ଗ ବାତ ଧଇଲା । ମୁଁ ପାରୁଯାଏ ଲାଗିଥାଏ । ପୁଅର ଚଟଶାଳୀ ପାଠ ସରିଯିବ । ପୁଅମୋର ଦେଶଛାଡ଼ି ପାଠ ପଢ଼ିବାକୁ ପରଦେଶୀ ହେବ । ମୋ ବଡ଼ବୋହୂ ଯାଇ ତା ଶ୍ୱଶୁରଙ୍କୁ ପଚାରିଲା— ବାବା । ମହେନ୍ଦ୍ର କଥା କିଛି କହିଲ ନାହିଁ । ସେ କେବେ ବାବୁହେବ । ତା ପାଠ କେବେ ସରିବ । ଯେତେବେଳକୁ ମୋ ବଡପୁଅର ଚାରି ପାଞ୍ଚ ପିଲା ହେଲେଣି । ସେ କନ୍ଧମାଳରେ ଗୁମାସ୍ତା ଅଛି । ତା

ଝି ଘା କହିଲେ—ମହେନ୍ଦ୍ରର ପାଦରେ ଶନି ଚଳିଲା । ସେ ଅଠରବର୍ଷ ପରିବ୍ରାଜକ ହୋଇଯିବ । ବହୁ ତୀର୍ଥ ବୁଲିବ । ଫେରିବ । ବିଭାହେବ । ତାର ପୁଅଝିଅ ହେବେ ।

“ବାପା ତାର ଗଲେ । ତା ବାପା ଯାହା କହିଥିଲେ ସେକଥା ସବୁ ସତ ଘଟିଲା । ପୁଅମୋର ପରଦେଶୀ ହେଲା । ମୁଁ ବଡ଼ କଦର୍ଥନା ହୋଇ ଉହ୍ଳା-ବିକଳ ହେଲି । ବଡ ପୁଅ ବୋହୂଙ୍କ ପାଖରେ ମନ ବୁଝାଇ ରହିଲି । କେତେ ମାଇପେ କେତେ କଥା କହନ୍ତି—ବୁଢ଼ା ତ ଗଲେ । ଏଡ଼େ ଗୁଣର ପୁଅକୁ ବୁଢ଼ୀ ମୂର୍ଚ୍ଛି ଦେଲା ।

କର୍ମ କଷଣ ଦେହ ସହେ
ବନସ୍ତେ ଅଜଗର ପ୍ରାୟେ ।
ତାହାକୁ କହିବ ! ଅଠର ବରଷ ଲୋ ମା :”

ମାଙ୍କ ପଛରେ,
“ଫେରିଲା ?”
ମା ହସନ୍ତି,
“ନହେଲେ ତୁ କୁଆଡ଼ୁ ଆଇଲୁ ?”

# ମାଉସୀ

ନେତେ ପିଲାମାନେ ସବୁ ମାମୁଁ ଘରକୁ ଯା'ନ୍ତି; ଆସନ୍ତି । ଆମେ ଭାଇ-ଭଉଣୀ କେବେ ମାମୁଁ ଘରକୁ ଯିବୁ ବୋଲି ଭାବୁଛୁ । ଦଶବର୍ଷ ବୟସର ହେଲିଣି । ମୋ ତଳେ ଚାରିଟି—ଦୁଇଟି ଭଉଣୀ, ଦୁଇଟି ଭାଇ ହେଲେଣି । ମାମୁଁଘର ଦେଖିନାହିଁ । ମାମୁଁମାନେ ଆସନ୍ତି—ବରଷକେ, ଛ'ମାସକେ । ଅଜା ମଧ୍ୟ ଆସିଥା'ନ୍ତି—ଦି'ଥର କି ତିନିଥର । ବୋଉ ବାରବର୍ଷ ହେଲା ଯାଇନାହିଁ । ତା ବାପାଘର ପଟେ ଭଲେଣି—ବାରବର୍ଷ ହୋଇଯିବ, ଗୋଟେ ଯୁଗ ହୋଇଯିବ । କେବେ ଆଉ ଝିଅ ଆସିବ ? ମୋର ଜଣେ ବଡ଼ ବାପାଙ୍କ ଝିଅ, ବୋଉର ଦାଦାଙ୍କ ପୁଅକୁ ବାହାହେବ - ସେମାନେ କନ୍ୟା ଦେଖିଗଲେ । ଏପଟେ କନ୍ୟାବାପ ବାହୁ ଦିନର କଚ୍ଛାଦନ ପୂର୍ବରୁ ମରିଗଲେ, ତେଣୁ କନ୍ୟାକୁ ସେମାନେ ନେବେ—ବାହାଘର ବରଘରେ ହେବ । ବୋଉର ଝିଆରି, ତେଣେ ଭାଉଜ ହେଉଛି । ନିଜର ଝିଆରି ନାହିଁ କି ନିଜର ଭାଉଜ ନାହିଁ ।

ଦଦା ରଜାଘରୁ କାର୍ ଯୋଗାଡ଼ କଲେ । ଆମ ଗାଁରୁ ମାମୁଁଘର ଗାଁକୁ ଯିବ । କନ୍ୟାକୁ ଧରି ଦଦା 'ବୋଉ' ସେଠାରୁ କନ୍ୟାକୁ ନେବାକୁ ମାମୁଁ ଆସିଥାନ୍ତି ଯେ ସିଏ, ଆମେ ଭାଇଭଉଣୀ ପାଞ୍ଚଜଣ ଗଲୁ । ସାନଭାଇଟି ମୋର ଦଶମାସର ହବ । ଦିନ ଦଶଟା ବେଳୁ ଗଲୁ ଯେ ଚାରିଟା ବେଳକୁ ପହଞ୍ଚିଲୁ । ସେଠି ଆଠ କି ଦଶ ଘରର ସାଇଟେ । ଝିଅ ଝିଆଣିଆ ସବୁ ଆସିଥାଆନ୍ତି—ଏକେ ପୁଅ ବାହାଘର, ପୁଣି ଝିଅ ଏତେଦିନକେ ଆସୁଛି । ରଜା ରଜାର ଭେଟ ହୁଏ, ଭଉଣୀ ଭଉଣୀର ଭେଟ ହୁଏନି । ପୁଣି ପିଉସୀର ଝିଅମାନେ ମଧ୍ୟ ଆସିଛନ୍ତି । ଆମେ ପହଞ୍ଚିଗଲୁ । ବୋଉକୁ ନେବାକୁ ବହୁ ସ୍ତ୍ରୀଲୋକମାନେ ଆସିଗଲେ । ଏତେ ମାଇପେ ଘୁ ଘୁ ହଉଛନ୍ତି । ଖୁଡ଼ୀଘରେ ବୋଉକୁ ଓହ୍ଲାଇଲେ —ଆମେ ମଧ୍ୟ । ସେଠୁ ବୋଉ ତା ନିଜଘରକୁ ଚାଲିଚାଲି ଗଲା--ଆମେ ଚାଲିଲୁ, ନୂଆକରି ମୁଁ ସମସ୍ତଙ୍କୁ ଦେଖୁଛି । ଆଗରୁ ଶୁଣିଥିବା ପ୍ରକାରେ ଚିହ୍ନୁଛି । ବୋଉକୁ ଦେଖି ଜଣେ କାନ୍ଦିବାରେ ଲାଗିଲେ । ଆଉ ଦି'ଜଣ ଜୁହାର ହେଲେ—ସାନ ମଉସୀ ଦି'ଜଣ । ତାଙ୍କୁ ଆଉ ମାଉସୀକୁ ଦେଖିଲି । ମାଉସୀ—ବସନ୍ତ ମୁହଁ, କପାଳ ବାଁ ପାଖରେ ସାରୁଡ଼ିଟିଏ, ଚକା ମୁହଁ, ବଗୁଣ୍ଠ ବାଳ ଗଣ୍ଠି—ଖୋଲିଦେଲେ ପିଣ୍ଡୁ ତଳକୁ ଓଇଁଯିବ । ବେଶ୍ ଗହଳିଆ ବାଳ । ମୁଁ ଏତେ ବାଳ କାହାର ଦେଖି-ନ ଥିଲି । ବୋଉର ମଧ୍ୟ ବାଳ ଯେ, ତାଙ୍କପରି ଏତେ ନାହିଁ । ସିଂହକଟୀ, ଲମ୍ବା ଦେହ, ପିଣ୍ଡୁ ବଡ଼ ବଡ଼, ଡେଙ୍ଗା ମଧ୍ୟ, ମୋଟା ଦେହ ନାହିଁ । ଦେହକୁ ଦେଖିଲେ

ମୁଣ୍ଡଟା ବଡ଼, ମୁହଁ ବଡ଼ । କାନରେ କାନଫୁଲ, ନାକରେ ଗ୍ରେଟ ଗ୍ରେଟ ଚଉଡ଼ିଆ । ବେକରେ ସୋରିଷିଆ ମାଳିଟିଏ । ହାତରେ ଚୁଡ଼ୀ ନାହିଁ । ୧୫/୨୦ ଦିନର ଝିଅଟିଏ ଧରିଥିଲେ । ବୋଉକୁ କହିଲେ—ସବୁତ ସରିଲା, ତୁ ଆସିଲୁ । ବୋଉ କହିଲା—ସେଇଟାକୁ କାହିଁକି ଧରିଛୁ, ଶୁଆଇ ଦେ । ବୋଉର ସାବତ ମାଆର ଗୋଟେ ଝିଅ ହେଇଥିଲା—ବୋଉ ଭାବିଥିଲା ମାଉସୀ ପରା ତାକୁ ଧରିଛନ୍ତି । ମାଉସୀ କହିଲେ—ଏଇଟା ଜନମ ହୋଇଛି । ବୋଉ କହିଲା—ମତେ କିଏ ହେଲେ କହିନାହାନ୍ତି ମୁଁ ଖାଲି ଭଉଣୀଟା ବୋଲି । ବୋଉ, ତା ଭାଇଭଉଣୀ, ଆମେ ମିଶି ସାତଦିନ ରହିଲୁ । ତାପରେ ଆମେ, ବୋଉ ସମସ୍ତେ ଫେରିଆସିଲୁ ଆମ ଗାଁକୁ ।

ଆଉ ଚାରିବର୍ଷ ପରେ । ମୋ ମାମୁଁଙ୍କ ବାହାଘର ହେବ, ବୋଉ ଯିବ, ଆମେ ଯିବୁ—ବଡ଼ମାମୁଁ ଡାକି ଆସିଲେ । ସମସ୍ତେ ଗଲୁ । ମାମୁଁଙ୍କ ବାହାଘର ହେଲା, ମାଇଁ ଆସିଲେ । ମାଉସୀ, ବୋଉ, ଅନ୍ୟାନ୍ୟ ମାଉସୀ, ସାହିର ଝିଅ-ମାନେ ସବୁ ଏକାଠି ହେଲେ । ମାଉସୀ ପାଖରେ ଆମେ ରହିଲୁ । ମାଉସୀ ବେଶ୍ ହସ-ଖୁସି, ସାହିପଡ଼ିଶାଙ୍କ ମେଳାପି । ମୁଁ ମାଉସୀଙ୍କ ପାଖରେ ଶୁଏ । ସେ କଥା କହନ୍ତି—ଶୋଇବା ଶେଯରେ । ବହୁତ ଏଣ୍ଟୁ ତେଣ୍ଟୁ କଥା କହୁ କହୁ ତାଙ୍କ ଜୀବନୀରୁ କେତେ କହନ୍ତି ।

ତୋ ବୋଉ ବାହାହେଇ ଗଲା ପରେ ମୁଁ କମିତି ଏକାକୀ ହେଇଗଲି, ମା ପାଖରେ ସନ୍ତୁଳି ହୋଇଗଲି । ନିର୍ମଳା'ଟି ତ ସାନ । ଛବିଶ ବର୍ଷ ହୋଇଗଲା । ବିଭାଘର ହେଲା । ବାପା ଆମର କନ୍ୟା ଛାଡ଼ିଦେଲେ । ଶାଶୁଘରେ ତୋ ମଉସା, ତାଙ୍କର ଅଉ ଗୋଟେ ଭାଇ, ଭଉଣୀଟିଏ । ମୋ ବାହାଘର ଅଗରୁ ନଣନ୍ଦଟିର ବାହା ସରିଥିଲା । ଯିଏ ମୋ ପିଉସୀର ବୋହୂ ହୋଇଥାଏ । ଭଉଣୀ ଭଣେଇ ଶଳା ଦିହିଙ୍କି ଆଣି ନିଜ ଘରେ ରଖିଥାଆନ୍ତି । ଆମ ବାହାଘର ତାଙ୍କରି ଘରେ ହୋଇଥିଲା । ମଉସାଙ୍କର ବାପଟି ତ ରାକ୍ଷସ । ଶାଶୁ ଚାରୋଟି ସନ୍ତାନଙ୍କୁ ଜନ୍ମ ଦେଇଥିଲେ । ଶଶୁର ଦିନେ ବଡ଼ ପୁଅ ଦିହିଙ୍କି ମାଇଲେ । ଦଶ ବାର ବର୍ଷର ପିଲା ସେମାନେ । ପୁଅମାନେ କହିଲେ—ଆମେ ଯାଉଛୁ ପୋଖରୀରେ ପଶିଯିବୁ । ଦିହେ ଯାଇ କୁଆଡ଼େ କାହାଘରେ ଲୁଚିଗଲେ । ମା ଭାବିଲା—ଏତେ ଏତେ ପୁଅ ପୋଖରୀରେ ପଶିଗଲେ, ମୁଁ ଆଉ ବଞ୍ଚିବି କାହିଁକି ? ସେ ଯାଇଁ ପୋଖରୀରେ ପଶିଗଲା । ପୁଅଦିହେଁ ଘରକୁ ଆସିଲାପରେ ଦେଖିଲେ ମାଆ ନାହିଁ । ସାନଭଉଣୀ ସାନଭାଇଟିକୁ ଧରି ବସିଥାଏ । ଦି'ଭାଇ ମାଆକୁ ଖୋଜିବାକୁ ଗଲେ । ଦେଖିଲେ ମାଆ ପୋଖରୀରେ ଭାସୁଛି । ବାପ କୁଆଡ଼େ ଯାଇଥିଲା । ଘରକୁ ଆସିଲା ।

ପିଲାଏ କହିଲେ । ରାତ ହୋଇଗଲାଣି । ପିଲାଏ ଶୋକ ଉପାସରେ ଛଟପଟ ହଉଛନ୍ତି । ବାପା କହିଲା—ଝିଅଲେ, ଧର ଲଣ୍ଠନ । ପୁଅ ଲଣ୍ଠନ ଧରିଲା । ବାପା ପୋଲିସ କନେଷ୍ଟବଲ ଥାଏ ପରା ! ପୋଖରୀରୁ ଶବଟାକୁ ଆଣି ଘୋଷାରି ଘୋଷାରି କୁଆଡ଼କୁ ନେଲା—ଜାଣିହେଲା । ସାନ ପୁଅଟିକୁ ମା ଛାଡ଼ି ଗଲାବେଳକୁ ଛ'ମାସ, ତା ଉପର ଝିଅ, ବଡ଼ ପୁଅ ଦଇଟି ପୁଅଙ୍କୁ ଅନାଇଁ ରହିଲେ । ପିଲାଟା କାନ୍ଦିଲେ, ଅନାଇ ରହିଲେ—ଏଇଟା କୋଉନାହିଁ କାହିଁକି କହି, ତା ଆଖିରେ ମହମ ଅଠା ଲଗାଇଦିଅନ୍ତି । ସେ ପିଲାଟି ଗଲା । ଆଉ ପୁଅ ଦଇଟି, ଝିଅଟି ରହିଲେ । ବଡ଼ହେଲେ । ବଡ଼ପୁଅ ମାଷ୍ଟର ଚାକିରୀ କଲା । ବଡ ହୋଉଠି ବାହା ହେଇଥିଲା ସେ—କୁଆଡେ କନ୍ୟା ସୁନ୍ଦର ନାହିଁ କହୁଥିଲା । ପୁଅଟିଏ ଜନମ କରି ମଲା । ମୋତେ ବିଧାତା ପୁଣି ଜୁଟେଇଦେଲା । ମୋ ଭାଗ୍ୟରେ ଥିଲା । ବର୍ଷଦିନ ବରଷକେ ଏତେ ସୁନ୍ଦର ପୁଅହେଲା ଆମ ଘରେ । ଛ' ମାସ ହେଇଥିଲା, ତାକୁ ତା ବାପା ଦେଖିବାକୁ ଆସିଥିଲା, ନବାକୁ ଚୁମ୍ବିଥିଲା । ବରଷେ ପୂରିଲେ ଯିବେ ବୋଲି ମୋ ବାପା କହିଲେ । ଏ ମା ! ଦଶମାସର ହେଇଛି—ତାକୁ ବସନ୍ତ ହେଲା । ସେ ଗଲା । ମୋତେ ହେଲା ତ ମୁଁ ମରୁ ମରୁ ବଞ୍ଚିଲି । କେତେଦିନ ହେଇଗଲା ଭଲ ହେବାକୁ । ଦିହଯାକ ବସନ୍ତ ଚିହ୍ନ । ତାପରେ ମତେ ନେଇକି ଗଲା ।

ପୁରୀରେ ରହିଲୁ । ଦେଢ଼ବର୍ଷ କାଳ ରହିଲି । ସେଇଠି ଦିଅର କମ୍ପାଉଣ୍ଡର ହେଲା । ବାହା ହେଲା । ଦି ଯାଆ ଏକାଠି ରହିଲୁ । ମୁଁ ରନ୍ଧାବଢ଼ା କରେ । ସାନବୋଉ ହେଇ ସିଏ ଖାଲି ଯେତେବେଳେ ଦେଖିବ ଖଟରେ ପଡ଼ିଥାଏ । ତା'ବର ଆସିଲେ ଉଠିବ । ଦିନେ ଦିନେ ତାକୁ କହିବ—ସବୁବେଳେ କଅଣ ଶୋଇ ରହୁଛୁ—ଯାଉନୁ, ଘରକାମଟା ଏକୁଟିଆ ସବୁ କରୁଛୁ ତା ସାଙ୍ଗରେ ମିଶିଯା—ହେଲେ ମଧ ସେ ଶୁଣିବ ନାହିଁ ।

ଆଉଗୋଟେ ମାଇଟେ ଜନମହେଲା ପୁରୀରେ । ସିଏ ମଧ୍ୟ ସେମିତି ଗଲା । ସବୁବେଳେ କୋଇଲିପରି ରଡ଼ିଲି । ସବୁବେଳେ । ପୁରୀରେ କେତେ ଠାକୁର ମନ୍ଦିର ଦେଖିଲି । ତୋ ମଉସା ବଡ ସୁନ୍ଦର ମଣିଷ ଥିଲା । ଚେକା ଚୌଧୁରୀ, ଗୋରା ତକତକ, ବାଙ୍ଗରିଆ, ହେଲେ ମୋ'ଠୁ ବାଙ୍ଗର ନାହିଁ । ଆଗରୁ ଯାହାକୁ ବାହା ହେଇଥିଲା—କାଳିଟା, ଗଠଣ ମଧ ସୁନ୍ଦର ନାହିଁ, ତାକୁ ପସନ୍ଦ ନ ଥିଲା । ହେଲେ କଅଣ କରିବ, ବାହା ତ ହେଇଛି । ହେଲେ ସେ ବଞ୍ଚିଲା ନାହିଁ । ମୋତେ ବଡ଼ ପସନ୍ଦ ଥିଲା ତୋ ମଉସାର—ବଡ ରସିକଆଟା ଥିଲା । ଯେ ; ବାର ଟାହୁଲିଟାପରି କରୁଥିବ । କହିବ—ମଲା ମୁଁ କଥାଣ ଶାଳୀ ହେଇଚକି, ସବୁବେଳେ

ଗୋଟେ ଇମିତି ହଉଚ ? କହିବ—କେବେନ ? ଆଉ କାହା ପାଙ୍ଗରେ ଅଛି । ତାମସା ହେବ ? ଶାଳୀ କଅଣ ମୋ ପାଖରେ ଅଛୁ ? ଶାଳୀ ଯେ ପୁଣି କେତେ ସାନ, ତୁ ଶାଳୀ, ତୁ ଝଗଡ଼ା । ଇମିତି ହେଇଲେ ମା—ସତେ କୃଷ୍ଣ-ବଳରାମ, ଝିଅ ନାଁଟି କୃଷ୍ଣି, ଭଅର ନାଁ ବଳରାମ—କେତେ ଚଞ୍ଚଳ ସୁଖର ଦିନଗୁଡ଼ା ଚାଲିଗଲା ।

ପୁରୀରୁ ମ୍ୟାର ବଦଳି ହେଲା ମାଲକ୍ରୁ—ତା ଗାଁ ପାଖକୁ । ବଳରାମ ପୁରୀରେ ରହିଲା । ଆମେ ଅଇଲୁ । ଆଉଥି ଗୋଟେ ରହିଲା ପେଟରେ । ବୁଢ଼ା କେବେ କେବେ ଝଡ଼ ଭଳି ଆସେ ଯାଏ । ମନସାକୁ ତୋର ମାଲଜର ହେଲା । ବୁଢ଼ା ଥାଏ । ଜର ଛାଡ଼ୁଆସୁଛି—ଦିନେ ସକାଳେ ବୁଢ଼ା ପୁଅକୁ କାଢ଼ିବାରେ ଲାଗିଥାଏ । ପୁଅ ଖଟରେ ଶୋଇଥାଏ । ମତେ କହିଲେ—ବାଗଅଡ଼େ ଯିବ ପରା, ଯାଅ, ତେଲ କାହିଁକି କରୁଛ—ଯାଅ । ମୁଁ ଗଲି । ବାଗରୁ ଆସି ଦେଖିଲାବେଳକୁ ମୋର ପେଡ଼ି-ପ୍ଟେରା ବାସନ କୁସନ ଅଗଣାରେ ଫୋପଡ଼ା ହେଇଛି । ପୁଅ ସନ୍ଧିତ କାନ୍ଦି ଉଠୁଛି । କ'ଣ ହେଲା କେଜାଣି ? ଖଟକୁ ଯାଇ ଦେଖିଲି ତୋ ମଉସା ମରି ଶୋଇଛି । ନଣଦେଇ'ତ ପାଖରେ ଥିଲା । ସେ ଆସିଲା । ଆଉ କ'ଣ କରିବ ? ସେତିକି ଦିନ କମିତି ଗଲା । ଭାଇ ଶୁଣି ଯାଇ ଧରି ଆଣିଲା । ପୁଣି ମାଇଚେ ଜନମ ହେଲା ଯେ କୋଉଠି ଅନ୍ନକନ୍ଦରେ ଲାଗିବ ପରା, ଆଶା କରିଥିଲି । ତା ଦୀପ ମଧ୍ୟ ଲିଭିଗଲା । ଯୋଉଠି ବସିଲି ଏକା ଏକା ଠୁଙ୍କା ଠୁଙ୍କା । ସବୁବେଳେ କାନ୍ଦିଲି । ସାନ ଭଉଣୀଟା ଶାଶୁଘରୁ ଆସିଥାଏ । ଗାଧେଇ ଦବ, ଖୁଆଇ ଦବ । ଶେଷକୁ ମାଦଳ ହେଇ ରହିଲି—ଏ ପୋଡ଼ା ଜୀବନ ନାରଖାର ହଉଛି । ଆଉ କ'ଣ ହେବ କେଜାଣି ?

ଭଅର କହି ପଠାଇଲା—ଭାଉଜ ଆସୁ, ଆମ ପାଖରେ ରହିବ । ସାନଭାଇ କହିଲା—କାହିଁକି କୁଆଡ଼େ ଯିବ ? ଆମର ଗ୍ରେଟ ଷ୍ଟଲଟେ ଅଛି । ହେଲେ ବଳରାମ ମଧ୍ୟ ବେଶୀଦିନ ବଞ୍ଚିଲା ନାହିଁ । ପୁଅଟିଏ ବରଷକର ହେଇଥିଲା । ବଳରାମ ହଇଜାରେ ଡାକ୍ତରଖାନାରେ ପଡ଼ିଥାଏ । ମରିଯିବ ବୋଲି ଜାଣିପାରିଲା । ଶଳାକୁ କହିଲା—ପୁଅଟାକୁ ଦେଖିବା । ପୁଅକୁ ଆଣିଲାରୁ ଛାତିରେ ଜାକିଧରି ଓପରକୁ ଉଆଁଇ ନଷ୍ଟଇଲା । ତା'ପରେ ମଲା । ଦିଜଣ ଯାକ ଏକା ବୟସରେ ଗଲେ । ଏ ଅଲପାଇସିଆ ଯୋଡ଼ାକଯାକ କମିତି ଜନମ ପାଇଥିଲେ, ମଲେ ତ ମଲେ, ପିଲାଦିନୁ ହେଲେ ମରିଥାନ୍ତେ—ଏତେ ନାଟ ହାଟ ଲାଗି ନଥାନ୍ତା । ଏବେ ସାନବୋଉ ତା ବାପାଘରେ ଅଛି । ମୁଁ ମୋ ବାପାଘରେ ରହିଛି । ସାନବୋଉ ତ ନର୍ସ ହେଇଛି । ପିଲାଟିକୁ ପାଠ ପଢ଼ାଇବ ବୋଲି ଶୁଣିଛି ।

ସିଏ ହେଲେ କୂଳରେ ଲାଗିବ ବୋଲି କୋଉ ଆଶା ! ମହା ମହାମେରୁ ତ ଟଳେ, ବୁଡକୁ କି ଭରସା ?

ବଳରାମ ଯେତେବେଳେ ଆମ ଘରକୁ ଆସିଥିଲା, ମତେ ଦେଖିବାକୁ, ଗାଁଲୋକେ ଆମର ପଚରାଉଚରା ହେଲେ—ଏ କିଏ ? କେଉଁ ଘରର କଅଣ ହୁଅନ୍ତି ? ଯେତେବେଳେ ଜାଣିଲେ ଯେ—ସେ ମୋ ଦିଅର ହୁଅନ୍ତି—'ନରସିଂହଘର ଗଣ୍ଡିଟିର ଇମିତି ଜଣେ ଦିଅର ଅଛନ୍ତି ନା ! ହଉ, ହଉ' । ବଳରାମକୁ ସମସ୍ତଙ୍କର ପସନ୍ଦ । ବଡ଼ ହସା ମଣିଷଟା । ଟିକିଏ ରଙ୍ଗ ମଧୁଳ ହେଲେ ମଧ୍ୟ ସୁନ୍ଦର ଚେହେରା !

ମାଉସୀଙ୍କର ଦାଦାଙ୍କ ଝିଅ—ଲାବଣ୍ୟ । ସେ ମଧ୍ୟ ବିଧବା ହୋଇ ଯାଇଥିଲେ । ମୁଁ ପଚାରିଲି, "ମାଉସୀ, ଲାବଣ୍ୟମାଉସୀ ତମଠୁ ବଡ ନା ସାନ ?"

"ମୋ'ଠୁ ନାବାଳ ଛମାସ କି ବର୍ଷେମାସ ବଡ ହବ । ହେଲେ ମଧ୍ୟ ମୁଁ ତାକୁ ଅପା ଡାକେନାହିଁ—ନାବାଳ ଡାକେ । ତା'ର ତ ପାଞ୍ଚ ପୁଅ । ତା ସ୍ୱାମୀ ମଲା ସିନା—ପାଞ୍ଚ ପାଞ୍ଚଟା ପୁଅ । ମୋ'ର ପରି ସେ ବାଞ୍ଝି କି ହେବ ! ଯୋ ଡାଳକୁ ଧରି ସେ ଡାଳ ଭାଙ୍ଗି ପଡ଼ିଲା ।"

ମୋ ଜେଜେମା କହୁଥିଲେ—ମୋ ନାତୁଣୀ ଲକ୍ଷ୍ମୀମନ୍ତ୍ରାଣୀ । ମୋ ତଳେ ସାତଭାଇ ଜନମହେଲେ । ମତେ ବଡ଼ ଶରଧା କରୁଥିଲେ ମୋ ମା' । ସେ ସବୁ କୁଆଡେ ଗଲା । ବୋଉକୁ ଜରହେଲା—ମତେ ଜର ହେଲା । ମତେ ସେତେବେଳେ ଚଉଦ ବରଷ । ବୋଉ ମୋର କାନ୍ଦଣା ହେଉଥାଏ—ଲକ୍ଷ୍ମୀମନ୍ତୀ ଝିଅ ମୋର ମରିଯିବ ମୁଁ କାହାଧରି ବଞ୍ଚିବି ! ଇମିତି କଥା ଲୋ ଝିଅ—ଦେଖୁ ଦେଖୁ ବୋଉ ମଲା, ମୁଁ ରହିଲି ଏସବୁ ଅନୁଭବ କରିବାକୁ—ବଡ଼ତ ଅସୁଖ ମୋର ।

ବାପା ବୋଉ ମଧ୍ୟ ବଡ ଗେଲବସର କରିଥିଲେ । ଅଳ୍ପବଳ୍ପ ଜିନିଷ ଖାଇବ ନାହିଁ, ଭଲ ଜିନିଷ ଖାଇବାକୁ ଲୋଡ଼ିବ । ଯେତେ ଦିନ ମଉସା ପାଖରେ ଥିଲି ସାଇମାନଙ୍କ କଥା ମନେପକାଇ କାନ୍ଦୁଥାଏ । ମଉସା ଚୋର କହୁଛ—ମୋ ମୁହଁଟାକୁ ଅଣ୍ଡାଳି ଦେବ ଅନ୍ଧାରରେ—କହୁଛ—ସବୁବେଳେ କାନ୍ଦୁଥା, ଖାଇ ଖାଇ ହୁଅ—ସେଇ ସାଇମାନଙ୍କ ପାଖରେ ରହିବୁ ନା ? ପଚିଶି ଛବିଶି ବର୍ଷ ରହିଲୁ, ଅନ୍ତର ମନ ଭାଙ୍ଗି ନାହିଁ, ଏଣିକି ରହିବୁ ତ, ଆଉ କଅଣ ? ଆଠଟି ବରଷ ଘର ସଂସାର । ସପନ ଦେଖି ନିଦ ଭାଙ୍ଗିଗଲା ପରି ।

ବସନ୍ତରେ ପଡ଼ିଥିଲି । ବହୁତ କୋରଡ଼ରେ ଫୁଲିଫାଟି ଯାଇଥାଏ । ମୋ ବାପା ମୁଣ୍ଡରେ ହାତଦେଇ ବସି ପଡ଼ୁଥାନ୍ତି । "ଯା, ମରିବ ତ ମରିବ, ତାକୁ ମୁଁ ଘରୁ କାହିଁକି ବାହାରିବ ?" ଡରରେ ଯାଇ ପଡ଼ିଶା ଘରେ କିଏ ପଶିପାରୁ ନଥିଲେ । ସାନ ଭଉଣୀ ନାକରେ ଗାମୁଛା ବାନ୍ଧି ମୋ ପାଖରେ ପଶିବ । ସାଇର ଦାଦା ଖୁଡ଼ୀ, ଭାଇ ଭାଉଜ, ବଡ଼ମା ସାନ ଭଉଣୀକୁ କହନ୍ତି—'ଧନ୍ୟଲୋ ଝିଅ ତୁ ସେବାକାରୀ ।' ତା ପୁଅରୁ ମା' ଜଳି ଲାଗିଲା—ତୁମ୍ଭଠାରେ ତ ମୋ ସହିତ ରହେନଇ ଝଟେଇ ଯିଏ । କହିଲା, 'ତୁ ଘଣ୍ଟ ହୋ, ତୋ ପୁଅ ମରୁ ।' ସତକୁ ସତ ତା ତୁଣ୍ଡ ସତ ଘଟିଗଲା । ସବୁବେଳେ କପୋତାପର ଲାଗିଲି ।

ଦିନେ ଦାଦା-ପୁଅ-ଭାଇ ଆସିଲା ପାଖକୁ । 'ଅପା, ଆ, ଶୁଣ, ମୁଁ କହୁଛି —ତୁ ସବୁବେଳେ ଏମିତି କାନ୍ଦିଲେ, ବୋବେଇଲେ କିଏ ଶୁଣିବ ? ଯାହାତ ଘଟିବାର ଘଟିଗଲା । ତୁ ଏଥର ମନକୁ ବୁଝା । ଆଉ ତୁ କାନ୍ଦନା, ମୋ ସାନକୁହା ତୁ ମାନିଯା । ତୋ ଦେହରେ ଅଛି, ପେଟରେ ଅଛି, ଜୀବନତ ଅଛି । କିଏ କାହାର ଏ ସଂସାରରେ କହ ! ତୁ ଆଜି ଯାହା ପାଖରେ ଅଛୁ ଆଉ ରହିବୁ—ସେମାନେ ତୋର ଭାବିବେ ।' ସେ ବହୁତ କଥା କହି ବୁଝେଇଲା । ମୁଁ ତା କଥା ଶୁଣିଗଲି, ହଁରେ ଭାଇ, ଯାହା କହିଲୁ ସତ । ଯେ ଯାହା ଅର୍ଜିଥାଇ ସେ ତାହା ଭୁଞ୍ଜଇ । ମିଛେ ମିଛେ ସିନା କର୍ମକୁ ନିନ୍ଦଇ । ଏ ପୋଡ଼ା କପାଳରେ ଏଇଆ ସବୁ ଲେଖାଥିଲା ବୋଲି ଜାଣି ନ ଥିଲି ।

# ନିଶା

ପାଖାପାଖି ଦୁଇଟି ଗାଁ । ଏ ଗାଁରୁ ଡାକ ପକାଇଲେ ସେ ଗାଁକୁ ଶୁଭିବ । ବଡ ଭଉଣୀ ଏ ଗାଁରେ ବାହା ହୋଇଥିଲା । ସାନଭଉଣୀ ସେ ଗାଁରେ । ବଡ଼ ଭଉଣୀର ବର ଏ ଗାଁର କରଣ ସାଆନ୍ତ । ଆର ଗାଁର କରଣ ସାଆନ୍ତ ସାନ ଭଉଣୀର ବର । ସେ ଗାଁର କରଣଘର କୂଅ ଖୋଳା ହେଲା । ଖୋଳୁ ଖୋଳୁ କୂଅରୁ ସୁନା କଳସ ବାହାରିଲା । ଗାଁ କରଣ ଘର ସମସ୍ତେ ଗୁମନଆଁ ହୋଇଗଲେ । ସୁନା ହଜିଲେ ଖରାପ, ସୁନା ମିଳିଲେ ଖରାପ, ଏମିତି ବିଶ୍ୱାସ ଥିଲା । କରଣ ଘର ଠିକ୍ କଲେ, କୂଅରୁ ସୁନା କଳସ ବାହାରି ଥିବାରୁ ସେ ଘରେ ଆଉ ରହିବେ ନାହିଁ— ଗାଁକୁ କାଏ ପସ୍ତରେ । ଆର ଗାଁ ଛାଡ଼ିଦେଇ ସାନଭଉଣୀ ଘର ଏ ଗାଁକୁ ଚାଲିଆସିଲେ, ବଡଭଉଣୀ ଘରପାଖରେ ପଡ଼ୋଶୀ ହୋଇ ରହିଲେ । ଆର ଗାଁର ମୁଖିଆ ହୋଇଥିବାରୁ, ସେ ଗାଁକୁ ଯାଇ ସବୁ ବୁଝାସୁଝା କରୁଥାଆନ୍ତି । ବଡ଼ ଭଉଣୀ ଶାନ୍ତ, ସରଳ, ପରୋପକାରୀ । ସାନ ଯେ ରଣଚଣ୍ଡୀ । ପଡୋଶୀ ହୋଇ ରହିବା ଦିନୁ, ବଡ଼ ଭଉଣୀର ଗୁଣରେ ଯାଉନଥିଲା । ବଡ଼ ଭଉଣୀକୁ ଭୁଚ୍ଛାଟାରେ ଗାଳିମନ୍ଦ କରୁଥିଲା । ବଡ଼ର ଗୋଟିଏ ପୁଅ, ଛଅଟି ଝିଅ । ସାନର ପାଞ୍ଚପୁଅ, ଦୁଇଝିଅ । ବଡ ତା ନିଜର ଘର ଦୁଆର, ଛୁଆ ପିଲାଙ୍କର କାମସାରି ସାନଭଉଣୀର ପିଲାଟିମାନଙ୍କର ସବୁ ସେବା ଯତ୍ନ କରିନଏ । ସାନ ଯାହା କହେ, ଶୁଣିଯାଏ, ନୀରବରେ । ସାନ ଭଉଣୀ ଯେତେପିଲା ଜନ୍ମକଲେ ତାଙ୍କୁ ସବୁ ତା'ର ନିଜର ସମାନ ଲାଗୁଥାଏ । ଏଇମିତି ପୁଅ ନଅ ବର୍ଷର, ବଡ ଭଉଣୀର ବର କୁଆଡେ ଗୋଟେ କାମରେ ଯାଇଥିଲେ, ସେଠି ତାଙ୍କ ହଇଜା ହେଲା, ସେ ମଲେ । ସାଙ୍ଗରେ ଯିଏ ଯାଇଥିଲେ, ସେ ଆସି କହିଲେ । ବଡ଼ ଶୁଣି, ଆଉ କହିପକେଇଲେ —'ମୋ ପୁଅ କାହିଁ ?' ପୁଅ ସେତେବେଳେ ନଈରେ ମାଛ ଧରୁଥିଲେ । ତାଙ୍କୁ ଡକାଇ ଅଣାହେଲା । ମା' ପୁଅକୁ କୋଳରେ ବସାଇଲା । ସମ୍ପତ୍ତିର ଅଭାବ ନଥିଲା । ପୁଅଟିକୁ ଅଠର ବର୍ଷରେ ବାହାକଲେ । ପରେ ପରେ ଝିଅମାନଙ୍କୁ ବାହାଦେଲେ । ଦିବ୍ୟସୁନ୍ଦର ବୋହୂଟିଏ । ତାର ଝିଅଟିଏ ହୋଇଥିଲା । ପରେ ପୁଅଟିଏ ହେଲା- ତା ବାପଘରେ ଥିଲା । ସେ ମରିଗଲା ଓ ପୁଅଟି ମଧ୍ୟ ମରିଗଲା । ତାର ବର ଶୁଣିଲା । ଗଲା । ଶ୍ୱଶୁର ଘରୁ ଝିଅଟିକୁ କାନ୍ଧରେ ପକାଇ ଚାଲି ଆସିଲା ଯେ ଆଉକେବେ ଶ୍ୱଶୁର ଘର ଦୁଆର ମାଡ଼ିଲା ନାହିଁ । କେତେବର୍ଷ ପରେ ପୁଅକୁ ପୁଣି ବାହା କରେଇଲେ ।

ସାନଭଉଣୀର ବଡ଼ପୁଅ ଯୋଡ଼ିକ ବାନ୍ଧା ହେଲେ । ସାନଭଉଣୀ କେଇଦିନ ତ ବୋହୂଙ୍କ ପାଖରେ ରହିଲା ପରେ ମରିଗଲା । ତା ବୋହୂମାନେ ବଡ଼ମାମାଙ୍କୁ ଭଲପାଉଥିଲେ । ଦୁଇଟିଯାକ ପରିବାର ଏକ ହୋଇଗଲେ—ଯେମିତି ବଂଧୁ ନୁହନ୍ତି—ଏକା ପରିବାର । ସାନର ଆଉ ତିନୋଟି ପୁଅ ବାନ୍ଧାହେଲେ । ଝିଅ ଯୋଡ଼ିକର ବାହାଘର ମଧ୍ୟ ହୋଇଗଲା ।

ବଡ଼ଭଉଣୀ ଛ'ଟି ପୁଅବୋହୂଙ୍କର ମୁରବି ରହିଲେ । ସାନର ପାଞ୍ଚପୁଅଙ୍କ ଭିତରୁ ବଡ଼ଝିଅର ପୁଅଝିଅ ନଥାଏ । ଦ୍ୱିତୀୟ ଭାଇର ପାଞ୍ଚପୁଅ ତିନିଝିଅ, ମଝିଆଁ ଦୁଇଟିଙ୍କର ଗୋଟିଏ ଗୋଟିଏ ଝିଅ । ସବା ସାନର ପୁଅଟିଏ । ମଝିଆଁ ଦୁଇଜଣ ଉପର ଭାଇଙ୍କର ଦୁଇଟି ପୁଅଙ୍କୁ ପୁଅ କରିନେଲେ । ଦ୍ୱିତୀୟ ଜଣଙ୍କର ଆଉ ରହିଲେ ତିନୋଟି ପୁଅ, ତିନୋଟି ଝିଅ । ବଡ଼ ଭାଇଙ୍କର ପୁଅଝିଅ ନଥିଲେ ବି ତାଙ୍କ ସ୍ତ୍ରୀ ଜଣେ ଭାଇଠାରୁ ପୁଅ କି ଝିଅ ନେଲେନାହିଁ । ସେ ରଖିଥାନ୍ତି ଗୁଡ଼ିଏ ଗାଈ । ଗାଈଙ୍କୁ, ବାଛୁରିଙ୍କୁ ବାନ୍ଧନ୍ତି ନାହିଁ । କହନ୍ତି—ଏମାନେ ମୋର ପୁଅଝିଅ, ଏମିତି ଘରଦ୍ୱାର ବୁଲିବେ, ବନ୍ଧା ହେବେନାହିଁ । ସବୁ ଯାଆ ମାନେ ତାଙ୍କୁ ଡରିମରି ରହୁଥାନ୍ତି । ସେ ଗୋଟିଏ ବଳେଇ ରଖି ଥାଆନ୍ତି—ସୁନ୍ଦର, ବଡ଼, ଧଳା ବଳେଇ । ଗାଈର କ୍ଷୀର ବଳେଇ ଖାଇବ । କ୍ଷୀରଭାତ ବଳେଇ ଖାଉଥିବ—ଶୁଖୁଆ ଭଜାହୋଇ ଥାଳିରେ ଥିବ, କ୍ଷୀର ଭାତରେ ସେ ବସି ଶୁଖୁଆ ଚକଟୁ ଥିବେ—ବଳେଇ ଖାଉଥିବ, ମିଆଁଉ ମିଆଁଉ ହେଉଥିବ, ମୁହଁକୁ ବାରମ୍ବାର ଅନଉଥିବ, ଦିନରେ ରାତିରେ କୋଳରେ ଶୋଉଥିବ । ବଡ଼ ଅଭ୍ୟାସରେ ଥାଏ ବଳେଇ । ଗାଈଙ୍କୁ କେହି ବାନ୍ଧିବେ ନାହିଁ କି ବଳେଇକୁ କେହି ମାରିବେ ନାହିଁ । ଯା'ମାନେ ଦାନ୍ତ କଡ଼ମଡ଼ କରୁଥିବେ—ସବୁଜଣ ଏକାପ୍ରାଣ ହୋଇଥିବେ, ମାତ୍ର କେହି କିଛି କରିପାରୁ ନଥିବେ । ଭାଇମାନଙ୍କର ବଡ଼ଭାଉଜ ବଡ଼ ଆଦରର ମାନ୍ୟ । ଭାଇଙ୍କ ସାମନାରେ ପଡ଼ୁ ନଥିବେ । ଗାଈ ଧକ୍କାରେ କୋଉପିଲା ପଡ଼ିଗଲେ କି ଆଉକିଛି ଅସୁବିଧା ହେଲେ, ଯାଆମାନଙ୍କ ଉପରେ କେବେ ବଡ଼ ଯାଆ ରାଗିଲେ ବା କିଛି କହିଲେ, କୌଣସିକଥା ଭାଇମାନେ ବଡ଼ଭାଇଙ୍କର କାନକୁ ନିଅନ୍ତି ନାହିଁ । କାରଣ ବଡ଼ଭାଇ ଯଦି କିଛିକଥା ଜାଣିବେ ସ୍ତ୍ରୀଙ୍କୁ ଆକଟିବେ, ତେବେ ଭାଉଜ ରୁଷିବେ, ଦିନସାରା ନ ଖାଇ ନ ପିଇ ଶୋଇବେ । ସେ ନ ଖାଇଲେ କେହି ଖାଇପାରିବେ ନାହିଁ । ପିଲାଙ୍କୁ ଚଳପ୍ରଚଳ କମିଠ ହେବେ, ବୂଢ଼ ଯାଆ, ଦେଢ଼ର-ମାନେ ପିଲଙ୍କୁ ଜଗା ରଖନ୍ତି । ଗାଈମାନେ ବହୁତ ହେଲେ । ବାଛୁରି ଅଣ୍ଡିରା, ମାଈ, ପଲପଲ । ବଡ଼ ଯାଆ କହନ୍ତି—ତା'ର ପାଞ୍ଚ ପୁଅ ଝିଅ ଯେମିତି ଏ ଘରେ ଚଳୁଛନ୍ତି, ମୋ ଗାଈବାଛୁରି ସେମିତି ବୁଲିବେ, ବୁଲିବେ । ଗାଈମାନଙ୍କୁ ଭଲ

ଖୁଆଇ ପିଆଇ ହଳିଆ ମୂଲିଆମାନେ ତଟସ୍ଥ ହୋଇ ରହୁଥାଆନ୍ତି । ବଡ଼ ସାଆନ୍ତାଣୀ ଯାହା କହିବେ, କରିବେ । ଏଣେ ଗାଁରେ ସାଆନ୍ତ ମୁଖିଆକୁ, ଘରକୁ ସାଆନ୍ତାଣୀ ବଡ । ଯେମିତି କରିବେ, କହିବେ ସେମିତି ହେବ । ଦ୍ୱିତୀୟ ଯାଆ କହନ୍ତି—ଓହୋ ! କି ଉତ୍ପାତ, ଏ ପୃଥିବୀକୁ ଭାରି ହଉଛୁ, 'ଅତି ଉତ୍ପାତ, ଘୋର ନାଦ, କଳା ପଡ଼ିବ ପରମାଦ ।' ହଉ, କେତେଦିନ ଆମେ ଏମିତି ଅବସ୍ଥା ହଉଥିବା । କେବେ କେବେ ଅସହଣି ହୋଇଯାଆନ୍ତି ! ରକ୍ତମାଂସ ଦେହ ଧରି କାଏ କେତେ ସହିବ ? ତେଣୁ ଯାଆ କି ଦିଅର କିଛି କହିଲେ, ବଡ ଯାଆ ରୁଷିକରି ଶୋଇବେ । ଥାଳିଟିଏ ଭଲକରି ମାଜିମୁଜି ଦେଇ ଅଧସେରେ ନବାତ ମୁଣ୍ଡାଟାଏ ଥାଳେ ପାଣିରେ ପକାଇଦେଇ ଶୋଇଯିବେ । ସେ ନ ଖାଇଲେ ତ ତାଙ୍କ ସ୍ୱାମୀ ଖାଇବେ ନାହିଁ କି ଯାଆ ଦିଅରମାନେ ଖାଇବେ ନାହିଁ । ଛଟପଟ ହୋଇ ରହୁଥିବେ । ଦିନେ ବଡ ଦିଅର ସହି ନ ପାରି କହିଲେ—"ଖାଇବାକୁ ବାଢ଼" । ତାଙ୍କ ସ୍ତ୍ରୀ କହିଲେ, "ବୁଝିନ, ଅପା ତ ଦିନଯାକ ରୁଷି ଶୋଇଛନ୍ତି, କିଛି ଖାଇ-ନାହାନ୍ତି" । ସେ ପାଟିକରି ଉଠିଲେ, ଭାଉଜ ଶୁଣିଲପରି, "ଅଲୋ ଏ, ମତେ ନବାତପାଣି ଥାଳେ ଦେଲେ ମୁଁ ବି ଉପାସ ରହିଯିବି ଯେ । ଆଣେ । ବାଢ଼ିବୁ କି ନାହିଁ ?" ତେଣେ ବଡ ଯାଆଙ୍କ ସ୍ୱାମୀ—ହଁ, ହଁ, ଖାଇବ ବୋଲି ଉଠଉଥିବେ । ଇଏ ଇଆଡେ ଜଣେ ଖାଇବା ଆରମ୍ଭ କଲେ, ଅନ୍ୟଭାଇମାନେ ଖାଇବେ । ଜଣେ ଯାଆ ଚାଇପାରି, ବଡ଼ ଯାଆ ଦିଅରଙ୍କୁ ବାଢ଼ିବାକୁ ଲାଗିଥିବ, ଅନ୍ୟମାନେ ଖିଅପିଆ କରାଯିବେ । ଏମିତି ମାସରେ ଦିନ ଦୁଇଦିନ ରୁଷା ଚାଲିଥିବ । ଏଇମିତି ହେଇ ହେଇ ଦିନେ ହୋଇଗଲେ । ବଡ଼ ଯାଆ କେଶୀଦିନ ବଞ୍ଚିଲେ ନାହିଁ । ଶେଷବେଳକୁ ଝିଅ ଭଣଜାକୁ ପୁଅକରି ଆଣିଲେ । ବୋହୂ ବି ଆସିଲା । ହେଲେ ବଡ଼ ଯାଆ ମଲା ପରେ ପରେ ଗାଈଗୋରୁ ଗୋଟାକୁ ଗୋଟା ଫଟ୍‌ପାଟ୍ ମଲେ । ମହାବାର ଦଶ ବାରଦିନ ଭିତରେ ଗାଈଗୋରୁ ବାଛୁରି ସବୁ ଶେଷ । ବଳେଇ ଭୂଆଡେ ପଳାଇଲ । କ୍ରମେ ଧନସମ୍ପତ୍ତି ଅଭାବ ହେଲା । ଆଗର ଉତ୍ପାତ ଦୁଃଖରୁ ଏହର ଅଭାବ ଦୁଃଖ ବଳିପଡ଼ିଲା ।

ସବୁ ଭାଇମାନେ ପୁଅବୋହୂ ଧରି ନିଜ ନିଜ ସଂସାର ଚଳାଉଥାଆନ୍ତି । ଦ୍ୱିତୀୟ ଭାଇଙ୍କ ସ୍ତ୍ରୀ କିଛି ପାଠ ପଢ଼ିଥିଲେ । ତାଙ୍କ ବାପା ତାଙ୍କୁ ବୈଦ୍ୟକାମ ଶିଖାଇଥିଲେ । ସେ ଘର କାମଧନ୍ଦା ଭିତରେ ବୈଦ୍ୟକାମ କରୁଥାଆନ୍ତି । ତେଣୁ ତାଙ୍କ ପାଖକୁ ବହୁ ସ୍ତ୍ରୀଲୋକ, ବୋହୂ ଝିଅ ଆସନ୍ତି । ଔଷଧ ନିଅନ୍ତି, ଉପକାର ପାଆନ୍ତି । ପୁଣି—ଆସନ୍ତି ଆଉ ଦରକାର ହେଲେ । ତାଙ୍କ ପାଞ୍ଚପୁଅଙ୍କ ଭିତରୁ ବଡଟି ଓ ଚତୁର୍ଥଟି ଆଗରୁ ତଳ ଦ'ଭାଇଙ୍କର ପୁଅ ହୋଇଯାଇ-

ଥିଲେ । ପାଖରେ ତିନିପୁଅ ଓ ଦୁଇଝିଅ । ତିନି ଭିତରୁ ବଡ଼ ଦୁଇଟି ବାହାହେଲେ । ତିନିଝିଅଙ୍କ ଭିତରୁ ବଡ଼ଟିର ବିବାହ ପୁଅ ମାନଙ୍କ ବାହାଘର ଆଗରୁ ହୋଇ-ସାରିଥିଲା । ମଝିଆ ଝିଅ ନଣା, ସାନ ଉଷା—ଡାକରେ ଓଷା । ନଣାର ରୂପ ଗୁଣ ସବୁ ସୁନ୍ଦର । ଭାଇମାନଙ୍କର, ବାପା, ବୋଉଙ୍କର ପ୍ରିୟପାତ୍ରୀ ନଣା । ନଣା ନ ହେଲେ ଘର ଅନ୍ଧାର । ନଣା ସବୁ ରଖିବ, ସାଇତିବ । ଭାଉଜମାନେ ନଣାକୁ ଖୁବ ଶ୍ରଦ୍ଧା କରନ୍ତି । ଘରର ଅନେକ ଦାୟିତ୍ୱ ନଣା ଉପରେ । ନଣା ତଳେ ଓଷା । ସେ ଦିନେ ଦିନେ ହାଦକରି କହେ—"ବଡ଼ନନା' ସାନନନା, ମଝିଆନନା ସମସ୍ତେ ଖାଲି ନଣାଅପାର ପ୍ରଶଂସା କରୁଛନ୍ତି । ଓଷା ମଲା କି ଜିଇଁଲା, ଖାଇଲା କି ନ ଖାଇଲା ତାହାର କଅଣ ଯାଏ ?" ତାକୁ କିଏ କଅଣ କହିଲେ, ଏପଟକା ଅଛାରେ କିଛି କହିଲେ ରାଗି ରାଗି ସାଙ୍ଗ ସନ୍ତ୍ରିଙ୍କ ପାଖକୁ ଚାଲିଆସିବ, ଖାଇବ ନାହିଁ । ନଣା, ଓଷା ର କଥା କି ରାଗରେ କିଛି କହିବ ନାହିଁ—ହସି ଦେବ ।

ନଣା ବାଳିକାରୁ ଯୁବତୀ ହେଲା । ଏତେ ସୁନ୍ଦର ରୂପମୟୀ ଗୁଣମୟୀ ଝିଅ ! ତା ଲଗି ଖୋଲେଣି କଲେ ଭାଇମାନେ । ଠିକ୍ ବରପାତ୍ର ଜୁଟୁନାହିଁ । ବାପା ବୋଉ, ଭାଇଭାଉଜ ବ୍ୟସ୍ତ ହେଲେ । ନଣା ଦିନେ ରାତିରେ ସ୍ୱପ୍ନ ଦେଖିଲା—ଦୂରରେ ପର୍ବତ ଦିଶୁଛି । ତା ଭିତରେ ଗୁମ୍ଫା ଦିଶୁଛି । ଗୁମ୍ଫା ଭିତରୁ ଜଣେ ବାବାଜୀ ଆସିଲେ ତା ପାଖକୁ, କହିଲେ, "ତୁ ବାହା ହୁଅନା, ତୁ ରହିଯା" । ନଣାର ନିଦ ଭାଙ୍ଗିଗଲା । ସକାଳ ହେଲା । ବୋଉକୁ ଡାକି ସବୁ କହିଲା । ଭାଇଭାଉଜ ସମସ୍ତେ ଜାଣିଲେ । ସେମାନେ ବିଶ୍ୱାସ କଲେ । ହେଲେ ମଧ୍ୟ ବର ଖୋଜାଖୋଜି ପାଇଁ ଲାଗି-ପଡ଼ିଲେ । ଗୋଟିଏ ବରପାତ୍ର ଜୁଟିଲା—କଳା ଯେ ହାଣ୍ଡିକଳା, ତା ଉପରେ ମାଷ୍ଟ୍ର ହୋଇଛି । ମା' ଅଛି । ସାନପୁଅ । ନଣା ସାନବୋହୂ ହେବ । ପାତ୍ର କହିଲା—ବାହା ହେବ ଯେ, ମାତ୍ର ବାହାହୋଇ ଯିବାକୁ ତାର ସମ୍ବଳ ନାହିଁ, କନ୍ୟା ଆସିଲେ ବରଘରେ ବାହାଘର ହେବ । କନ୍ୟାପିତା, ଭାଇମାନେ ରାଜିହେଲେ । ନଣାମଣିକୁ ଶାଶୁଘରକୁ ଛାଡ଼ିବାକୁ—ଭାଇଏ, ଦୁଇଭାଏ ଗଲେ ! ଘରେ ଭାଇଭାଉଜ, ବାପାମାଆ, ସାଙ୍ଗ-ସାଥୀ, ଅପା, ଭଉଣୀ କାନ୍ଦାକଟା କରିବାରେ, ଅନ୍ୟମାନେ ବରର ଅମିତ କନ୍ଦର୍ପ ରୂପ ବର୍ଣ୍ଣନା କରୁଥାଆନ୍ତି । ସକାଳରେ ନଣାମଣି ବସିଲା । ଝିଅକୁ ବନ୍ଦାପନା କରି, ହୁଳହୁଳି ଦେଇ ବସାଇଦେଲେ । ସବାରି ଚାଲିଲା । ଅଧା ବାଟରେ ସବାରି ଭାଙ୍ଗିଲା । ଝିଅ ଦେହରେ ଆଘାତ ଲାଗିଲା । ଶାଶୁଘରେ ବୋହୂ ପହଞ୍ଚିବା ପୂର୍ବରୁ ତା ଦେଢ଼ଶୁର ଘର ଜୁଳୁପୁଡ଼ି ପଡ଼ିଲା । ଗାଈ ଗୋଟେ ଘଡ଼ାରେ ମରିଗଲା । ତାର ବଡ଼ ଯାଆ ଧନୁଷ୍ଟଙ୍କାର ରୋଗରେ ପ୍ରାଣ ହରାଇଥିଲା । ଏଣେ ବଡ଼ ଭାଇର ପୁଅଟି

ଛାଡ଼ିବାକୁ ଯାଇ, ସେ ମଧ୍ୟ ହଇଜା ରୋଗରେ ମରିଗଲା । ଶାଶୁଘରେ ଏସବୁ ଘଟଣା ଘଟିଯିବା ପରେ ପରେ ନାନା ଲୋକେ ନାନା କଥା କହିଲେ । ଶାଶୁ କହିବାରେ ଲାଗିଲେ—"ଅଲକ୍ଷଣୀଟା ମୋ ଘରେ ପଶୁ ପଶୁ ସବୁ ବିପଦ ଆସିଲା ଲୋ ମା" । ଏମିତି ଏମିତି କହି, ବାର ଗଞ୍ଜଣା ଦେବାକୁ ଲାଗିଲେ । ସ୍ୱାମୀ ତତୋଽଧିକ । ଆଉ କଅଣ କାହାକୁ କହିବ ଜଣାମଣି ! ଫୁଲିଫୁଲି କାନ୍ଦୁଥାଏ । ଭାଇମାନେ ଯିଏ ଯୁଆଡ଼େ ଫେରିଆସିଲେ, ଚତୁର୍ଥୀଘର ମାସେ ପୂରିଗଲା । ତା ଖାଇବା ପିଇବା କଥା ଆଉ କିଏ ବୁଝୁଚି ? ସାନ ପିଲାମାନେ ଯଦି ବୋଉକୁ ଦେଖିବାପାଇଁ ଆସି ତାକୁ ଦସ୍ତା କରନ୍ତି— ବୋଉ ଖିଅଟିଏ ମୁଢ଼ି ଗଣ୍ଡିଏ, କିଏ ଚୂଡ଼ା ଗଣ୍ଡିଏ ଆଣି ଆସନ୍ତି, ସେଥିରେ ପୁଣି ତା ବର ଯେ, ଜଗିହୋଇଥାଏ ଦାଣ୍ଡଦରେ । "କାହିଁ ? କଅଣ ନଉଚ ?" କହି ସେ ନେଇଯାଇ ଖାଇଦିଏ । ଏଣେ ବାପଘରେ ଭାଉଜମାନେ ଚୁପ୍‌ଚୁପ୍ କଥାବାର୍ତ୍ତା ହୁଅନ୍ତି—"ଆଲୋ ଏ, ଏମିତି ତା ଭିତରେ ପୋକଜା ଥିଲା ?" ସେମାନେ ଜୋକ ମୁହଁରେ ଲୁଣ ଦେଲାପରି ବସିଥାନ୍ତି । ମା'ଙ୍କ ଦୁଃଖ କହିଲେ ନସରେ । ସବୁବେଳେ କାନ୍ଦୁଥାଆନ୍ତି । ଭଉଣୀମାନେ । ଦୁଃଖର ଦିନ ଗୁଡ଼ାକ ଚାଲିଲା । ଚାରିମାସ ପରେ ଶୁଣାଗଲା, ଜଣାର ପିଲାପିଲି ହେବ । ଝିଅକୁ ଭାଇମାନେ ଡାକିବାକୁ ଗଲେ । ଜଣାମଣି ଆସିଲା । ସାଙ୍ଗସାଥୀ ଭାଇଭଉଣୀଙ୍କୁ ଦେଖି ମଧ୍ୟ ଆଉ ପ୍ରଫୁଲ୍ଲ ମନ ନ ଥାଏ । ସବୁବେଳେ କାନ୍ଦ କାନ୍ଦ ହେଉଥାଏ—ଧରି ଆଣିଲା ଚଢ଼େଇଟି ପରି । କେତେ ପିଠାପଣା, କେତେ ଭଲ ଭଲ ଜିନିଷ ସବୁ ଖାଇବାକୁ ଦେଉଥାନ୍ତି, କେତେ ହସ ଖୁସିରେ ତା ଦିନ କଟୁଥାଆନ୍ତା । ଖୁଡ଼ି ବୁଝାନ୍ତି—"ଏ ମା ! ଆଉ ଏମିତି ମନକଷ୍ଟ କରନା । ଯାହା ପୋଡ଼ କି ଜୋକ ପେଟରେ ଧରିଚ, ସେଥିରୁ କମିତି ଝଙ୍କାର ହେବ । ସେତକ ଲାଗି, କିଛି ଦୁଃଖ ତମର ଲିଭିଯିବ । ମନ ଫିଟାଇ ସାଙ୍ଗ ଭଉଣୀଙ୍କ ସଙ୍ଗେ କଥା ହୁଅ" । ପୁଅଟିଏ ଜନ୍ମହେଲା । ତା ବରଘରକୁ ଚିଠିଗଲା, "ଜଣାମଣିର ପୁଅ ହେଇଛି ।" ଏକୋଇଶିଆକୁ ତା ବର ଆସିଲେ । ଜଣାମଣି ବାପଘରେ ରହିଲା ବରଷେ । ତା ଭିତରେ ତିନିଚାରିଥର ତା' ବର ତା ପୁଅକୁ ଦେଖିବାକୁ ଆସୁଥିଲେ । ଆଗପରି ମନୋଭାବ ନଥିଲା ତା ବରର । ଭଲ କଥାବାର୍ତ୍ତା ହେଉଥିଲେ । ପୁଅକୁ ଧରିକରି ତା' ବାପ ବୁଲୁଥିବାର ଦେଖିଲେ ଗାଁଲୋକମାନେ ଥଟ୍ଟା କରନ୍ତି—"ଏ ପିଲାର ବାପା କିଏ କହିଥିଲା କେଜାଣି ତମକୁ ! ଖତଗଦାରେ ପଦ୍ମ ଫୁଟିଛି ।" ପିଲାଟି ଭାରି ସୁନ୍ଦର, ହସଖୁସିଆ, ମଉଜିଆ ହେଇଥାଏ । ପିଲାଟିକୁ ପାଇ ଜଣାମଣିର ଦୁଃଖ କିଛି ଲାଘବ ହୋଇଥାଏ । ପୁଅ ବରଷକର ହେଇଗଲା । ବର୍ଷପୂରଣି ମାମୁଁ ଘରେ ସରିଲା । ତା'ବର ତାକୁ ପଠାଇଦବାକୁ କହିକରି ଗଲେ । ନଡ଼ିଆ, ଉଖୁଡ଼ା, ଖଜାପିଠା ଭାର ଯୋଗାଡ଼ କରି

ଝିଅକୁ ପଠାଇବାର ବ୍ୟବସ୍ଥା ହେଲା । ଭାଇ ଜଣେ ଗୁଡ଼ିବାକୁ ଗଲା । ପାହ୍ୱାନ୍ତା ପାହ୍ୱାନ୍ତା ହଳିଆ ଶଗଡ଼ ବଳଦ ଯୋଚଦେଲା । ଭିତରେ ମସିଣା ଚଦର ବିଛେଇ ଦେଲା । ପୁଅକୁ ଧରି ଶଗଡ଼ରେ ବସିଗଲା ଜଣାମଣି । ବୋଉ, ନୂଆବୋଉମାନେ ଆଡିକୁ ଲୁହ ଜଗାଡ଼ି ଜଗାଡ଼ି ବହାଇଦେଲେ ଜଣାକୁ—ତା' ଶାଶୁଘର ଯିବାପାଇଁ । ଜଣା କାନ୍ଦୁଥିଲା । ଖୁଡ଼ୀଏ, ଝିଆରୀମାନେ, ଭଉଣୀମାନେ ପାଖକୁ ଆସି ଲୁହ ଧାର୍ ଧାର୍ ବୁହାଇ ବିଦାୟ ଦେଲେ । ଅନେଇଁ ରହିଲେ ଜଣାମଣି ଲୁଚଗଲା ଯାଏଁ ଗାଁ ସେମୁଣ୍ଡରେ । ହଁ, ଗାଁ ପାର ହୋଇଚଲା : ଘରକୁ ଆସିଲେ ମା, ଖୁଡ଼ୀଏ । "ଆହା, ଜଣାପରି ଝିଅ କଏ ହବ, କେତେ କଷଣ ନ ସହିଲା । ଏଣିକି ତା କପାଳ ସୁନ୍ଦର ହଉ । ପୁଅପଣତକୁ ଧରି ଘର କରୁ ।"

ଶଗଡ଼ିଆ ଗୀତ ଆରମ୍ଭ କଲା—

"ରାମ ଯେ ଲକ୍ଷଣ ଗଲେ ମୃଗ ମାରି
ମୃଗ ମାରି ତ ଫେରିବାର ବେଳେ
ଲକ୍ଷଣ ଯାଇ ପାଶେ ଯେ ଭେଟିଲେ,
ଦେଖିଲେ ରାମ କ୍ରୋଧେ ହୋ···

ଜଣା ଶଗଡ଼ରେ ବସିଥାଏ । ଭାଇକୁ ଡାକୁଥାଏ—ନନା ! ବସି ପଡ଼ିବା । ଜାଗା ବହୁତ ଅଛି । କେତେ ବାଟ ଚାଲିଲଣି ।

"ହଁ, ହଁ, ବସିବା" କହି ଶଗଡ଼ ଦଣ୍ଡା ଧରି ଚାଲିଥାନ୍ତି ଭାଇ ।
"ପିଲା ଶୋଇଲାଣି ନାଁ ଅନେଇଛ ?" କହି ଶଗଡ଼ ଭିତରକୁ ଅନାଉଁଥାନ୍ତି ।
ଜଣା କାନ୍ଦୁଥାଏ, ଭାବୁଥାଏ—"ଏଣିକି ଶାଶୁ ଭଲପାଇବେ ପରା ।"

ତା ପୁଅକୁ ଛଅମାସ ହୋଇଥିଲା, ତା ଭଲ ଭଉଣୀଟିର ବାହାଘର ହୋଇ-ଯାଇଥିଲା । ତା କଥା ଜଣା ଭାବୁଥାଏ ।—"ଉଷା କିମିତି ଥିବ କେଜାଣି ? ବୋଉକୁ ସବୁ କଷ୍ଟ ହେବ । ଭାଉଜମାନେ ଅଛନ୍ତି, ହେଲେ ଉଷା ପରି ହେବେ କି ? ଉଷା କେବେ ଆସିବ । ହଁ, ଉଷା ଭଲରେ ରହୁ ।"

ଏ ପୁଅଟି ଦୁଇବର୍ଷର ହୋଇଛି, ଆଉ ଗୋଟିଏ ପୁଅ ହେଲା ତାର । କିଛି ଦିନ ସୁଖରେ ସଂସାର ଚାଲିଲା । ଦିନେ ତା ବରର ପେଟବଥା ହେଲା, ତାକୁ ଡାକ୍ତରଖାନା ନେଲେ । ସେଠାରେ ତାର ସବୁ ଶେଷ ହୋଇଗଲା । ତାପରେ ବାପଘରକୁ ସେ ଆଉ ଆସି ନାହିଁ । ସେଇଠି ପୁଅଟିମାନଙ୍କୁ ଧରି ରହିଲା । ପୁଅ ଦୁହେଁ ପାଠ ପଢ଼ିଲେ । ବଡ଼ ହେଲେ । ଚାକିରି କଲେ । ବଡ଼ପୁଅର ବାହାଘର

ହେଲା । ତାର ପୁଅ ହେଲା । ତା ନାତିକୁ ଧରି ଖେଳିଲା । ସାନପୁଅ ବାହା ହେଉନ । କେବେ ଥରେ ଆସିଥିଲା ବାପଘର, ବାପାବୋଉ ନାହାନ୍ତି । ଆଉ ଭାଉଜେ ଚାହାଁନ୍ତି ନାହିଁ ଜଣା ଆସୁ । ଜଳ ଜଳ ସଂସାର, ପୁଅବୋହୂ ଧରି । ଝିଏ ଶାଶୁଘର ଗଲେଣି । ଭାଉଜଙ୍କର ଆଉ ସେ ଅଦରକାର ପଡ଼ୁନାହିଁ—ଯେତେବେଳେ ଜଣା ନ ହେଲେ ନ ଚଳେ । ବଡ଼ ଭାଉଜ, ଭାଇ ବି ଗଲେଣି ସେ ପୁରକୁ । ଉଷାକୁ ଦେଖିବାକୁ ଯାଏ ଜଣା । କେବଳ ସ୍ମୃତି ଗୁଡ଼ାକ ମନେ ପକାଇ ଝୁରିହୁଏ । ପିଲାଦିନ ମନେପଡ଼େ—

ଏମିତି ଅଗିଣ ମାସ ଆସେ, ଜହ୍ନି ଓଷା କରନ୍ତି ସବୁ ସାଙ୍ଗହୋଇ । କେତେ ପୂଜା ପାର୍ବଣ ଲାଗିଯାଏ ତା ପଛକୁ ତା ପଛକୁ । ଦୁଇଭାଇ ଦୁଇ ପଢ଼ଣାକୁ ପୁଅ ହେଇ ଯାଇଥିଲେ । ତିନିଭାଇ ନିଜର ଥିଲେ, ଭାଉଜମାନେ, ପୁତୁରା ଝିଆରି-ମାନେ, ଭାଇମାନଙ୍କ ଡାକ ଶୁଭିଯାଏ—"ଜଣାମଣି ! ଜଣାମଣି !" ଜଣା ନ ଦେଖିଲେ ସବୁ ଅନ୍ଧାର ।

ସାଙ୍ଗଝିଏ ସବୁ ଚିଢ଼ା ଚିଢ଼ା ରହୁଥିବେ—"ଆଜି ଜଣାର କପାଳରେ ବଜ୍ର କାମୁଡ଼ିବ । ଖାଲି ଗୁଳାକ୍ ହୋଇଛନା, ତା'ର ତ ଦେଖାନାହିଁ । ସେ ସାତବୁଢ଼ୀ ଆସୁ, ତାର କୋଉ ଖୁଡ଼ୀ ବୋଉ ତାକୁ ରକ୍ଷା କରିବ ? ଆମ ସାଙ୍ଗରେ ସାଙ୍ଗ ହେବନ, ବୁଢ଼ୀଙ୍କ ସାଙ୍ଗେ ସାଙ୍ଗ ହେବ ।" ଖୁଡ଼ୀମାନଙ୍କ ସବୁତ ହେ ମଧ ବୁଢ଼ୀଟିଏ । ଉଦଣ୍ଡିଙ୍କ ପରି ହେଉଥିଲେ, ସମସ୍ତେ କ'ଣ ଏତେ ଭଲ ପାଉ-ଥାଆନ୍ତେ ? ଦାଣ୍ଡିଙ୍କୁ ଯେମିତି ତା'ରି ସବୁ · ଘଡ଼ିରେ କୋଉ ଜିନିଷ ରହିବ, କିଏ କଅଣ ଖାଇବେ, ବାପାବୋଉ କ'ଣ ଖାଇବେ ? ଓଷାଟାକୁ କିଏ ଏତେ ଭଲ ପାଆନ୍ତି ନାହିଁ—ଯାହାହେଲେ ମୁହେଁ ମୁହେଁ ବତାଇଦେବ । ଆଠ ବରଷ ସାନ ଜଣାଠୁ, ତା ସାନଭଉଣୀ ଉଷା, ଓଷା । ତାକୁ ସେ କଷ୍ଟ କହେନ । ଓଷା ବାଲୁ ବାଲୁ ହେଇ କହୁ ଯାଉଥିବ···ଜଣା ଶୁଣି ହସି ଦଉଥିବ । ଫୁଲେଇ ନଥି... ସେ । ସମସ୍ତଙ୍କର ପ୍ରିୟପାତ୍ରୀ । ସେବା ଆଉ ପରିଶ୍ରମ । "ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର, ବୈକୁଣ୍ଠ ସମାନ ଆହା ଅଟେ ସେହି ଘର ।"

ଭାଉଜଙ୍କର ନଣନ୍ଦ, ସାନଭଉଣୀର ବଡ଼ ଭଉଣୀର ସ୍ନେହର ଭଉଣୀ, ବାପା ବୋଉଙ୍କର ଆଦରର ଜଣା, ବଡ଼ ଭଉଣୀର ପୁଅମାନଙ୍କର ଶ୍ରଦ୍ଧାର ମାଉସୀ । ଏପରି ସ୍ନେହର ବନ୍ଧନକୁ କେମିତି ଏଡ଼ାଇ ଖେଳି ବା ଡେଇଁବାକୁ ଯିବ ଆଉ କେତେବେଳେ ? ଅନବରତ ମେସିନ୍‌ଟିଏ ପରି ଲାଗିଥିବ । ପୂଜାପାର୍ବଣରେ ହସ ଖୁସିରେ କାଣ୍ଠିରୁ ସମସ୍ତ ଯୋଗଡେବ, ଘରକୁ ସଜାଇବ । କିଏ ସାଙ୍ଗସାଥୀ

କଅଣ କହିଲେ—"କଅଣ କରିବ କହିଲୁ ? ପାଣି ଆଣିବାକୁ ଯିବାବେଳେ ସାଙ୍ଗହୋଇ ଯିବା । ଯିବାପରି କହୁଛୁ, ମୋ ସୁନାଟା ପରି" କହି ଚାଲିଯିବ ।

ଏମିତି ଅଶିଣ ମାସ ଆସେ । ଝିଅମାନଙ୍କ ଅନ୍ତରର ସହିତ ଭଲପାଏ ନଶା । ସବୁ କୁଆଁରୀ କନ୍ୟା ଯୁବତୀ କନ୍ୟାମାନେ ଏକାଠି ହୁଅନ୍ତି । ସଞ୍ଜ ଆଗରୁ କେତେବେଳେ ଖରାବେଳେ ପୁଚିଖେଳ, କଉଡ଼ିଖେଳ ବଉଡ଼ା ବଉଡ଼ି ଖେଳରେ ସେମାନେ ମାତି ଯାଆନ୍ତି । ନଶା ଏସବୁ କିଛିତ ଇଚ୍ଛା କରେନା । ହଠାତ୍ ମନେ ପଡ଼ିଯାଏ—ନବାନାବୋଉ ଝିଅର ଏକୁଟିଆ ପାରିବ ନାହିଁ—ପୂଜାପୂର୍ବରୁ ଧାନ ଭାଜି ଲିଆ କରିବା, ଘଷି ଲଡ଼ୁ କରିବା—ଉଖୁଡ଼ା କରିବା – ନବାନା ତ ଶ୍ରେଷ୍ଠଟିଏ ! ଏଣେ ତା ବୋଉ ତ ବୁଢ଼ୀ ହେଲେଣି । ଝିଅମାନେ ସବୁ କରୁଛନ୍ତି, ତାଙ୍କର ଘରେ ଚୂଲି ଜଳୁଥିବ । ସେଇଠି ଝିଅମାନେ ଯେଝା ଯେଝା ସାମଗ୍ରୀ ତିଆରି କରୁଥିବେ । ତା ବୋଉ ପାଖରେ ବସିଥିବ, ସେ ସବୁ କରୁଥିବ । ତେଣେ ସାଙ୍ଗମାନେ ଭଉଣୀ ଝିଅମାନେ ଡାକ ପକାଉଥିବେ—"ଏ ନଶା ! ତୁ ଜମାରୁ ଘରୁ ବାହାରେନା ଲୋ ! ହେଲା, ତୋର ଏକା ବହୁତ କାମ ।" ସେଆଡ଼େ ଅନାଇଦେଇ ନଶା ହସିଦବ—"ତୁମ ତୁମ, ସରିଲାଣିନ, ଆଉ ଅଳ୍ପ ସମୟ । ଯାଉଛି, ଯାଉଛି, ଓଷାତ ଆଗରୁ ଗଲାଣି ।" "ଆଲୋ ଏ, ତୋ ପାଇଁ ଓଷା ବରମାଗି ଦବ ନା ? ତ ସଉତୁଣୀ ହବ ଲୋ !"

ଠିକ୍ ପୂଜାବେଳକୁ, ପିତ୍ତଳ ଥାଳରେ, ଗୁଣ୍ଡୁଡ଼ିରେ ଖୁଡ଼ିମାନଙ୍କ ସହିତ ଉଖୁଡ଼ା, ଘଷିଖଜା, ନଡ଼ିଆ, କଦଳୀ, ପିଜୁଳୀ, କମଳା ଧରି ପୂଜାକୁ ଆସିବ । ନିଜେ ସବୁ କରିଥିବ – ଝିଅଟି ତ ଛୁଆବାଳୀ । ନଶା ହଳଦୀ ଲଗାଇ ହଳଦୀ ବସନ୍ତ ପରି ଦିଶୁଥିବ । ତା ପାଦରେ ଅଳତା, ପାଉଁଜୁଲି । ସାଙ୍ଗଭଉଣୀ ଝିଅମାନେ କହିବେ—"ଆଲୋ, ତୁ ଏମିତି ସଜ ହୋଇ ଆସୁଛୁ – ଯେମିତି ଦେବୀ ଦୁର୍ଗା ଆସୁଛନ୍ତି ।" ନଶା କହୁଥିବ—"ଆଲୋ ରହମ, ଏମିତି କ'ଣ କହୁଛ ?" ସମସ୍ତେ ପଦେ ପଦେ କହିଯିବେ—

"ନଶା, ଆଲୋ ରହଲୋ ।"

"ସିଆଡ଼େ ନବାନା ବୋଉଟା କିଛି କରି ପାରିବ ନାହିଁ ପରା—ଯାଏ ।"

ଉଷାଟା ଖାଲି ପାଟି ଲଗେଇବ—

"ତୁ ତୋ ନବାନା ବୋଉକୁ ମୁଣ୍ଡେଇ ଥାଆ । ଆମେ ସବୁ କଅଣ କି ?"

ଖୁଡ଼ୀମାନେ ସବୁ ଶୁଣନ୍ତି, ନଣା ତ ଖୁଡ଼ୀମାନଙ୍କର ଗଳାର ହାର, କିଛି କହନ୍ତି ନାହିଁ । ଅନୁ ଅପା—ତାର ଆଉଜଣେ ବଡ଼ବାପାଙ୍କ ଝିଅ, ସିଏ କହେ—"ନଣା ପରି ଘରଣୀ ଆଉ କିଏ ଅଛମ ?" ନଣା ଶୁଣେ, ହସିଦିଏ ଅଳପ କରି—ସେମିତି ଦୋଷୀଟିଏ । କୁମାର ପୂର୍ଣ୍ଣିମୀ ଉପବାସ କରିଥିବ, ତେବେ ବି ସାରାଦିନ ଘରର କାମରେ ବ୍ୟସ୍ତଥିବ । ରନ୍ଧାବଢ଼ା, ଡ଼ଆଁକଆ, ଆସିଲା-ଗଲା, କୁଣିଆ-ମଇପ—ଭାଇମାନେ—କିଏ ପାଣି ମାଗିଲା କିଏ ଖାଇବାକୁ ମାଗିଲା । ନଣାମଣି ମୁହଁରେ ଖାଲି—"ଦଉଛି ନନା । ଦଉଛି ।" ଖୁଡ଼ୀ କିଏ ତେଣେ ଡାକ ପକେଇବେ—"ଦବଟି ମା' ଦଣ୍ଡା ବାଢ଼ି" । "ଖୁଡ଼ୀ, ଏତେବେଳ ହେଲାଣି, ଖାଇନ ?" ତାଙ୍କ ବୋହୂ କଥାତ ଜଣା । କହିବ, "ସ୍କୁଲ ସ୍କୁଲ, ଦଉଛି, ସୁମନ ବୋଉ ଶୋଇଲାଣିନା ?" ଏଇ ନଣା—ସବୁବେଳେ କାମ—, "ଦଉଚି, ନଉଚି, ରଖୁଚି ।" ସେଇମିତି ଜନ୍ମାଷ୍ଟମୀ, ରାଧାଷ୍ଟମୀ । ପଞ୍ଚକୁ, ପଞ୍ଚୁ ପୁଟେନଇ, ପରବ ।

ଛ'ଟି ବରଷରେ ତାର ସଂସାର । ଆଉ କ'ଣ ବାପଘରକୁ ଆସିବ ଯିବ ? ସଂସାର, ତାକୁ ବଳାଉଛି । ଶାଶୁ ଏଣିକି ଅଦରକଲେ, ପିଲା ଦୁଇଟିଙ୍କୁ । ପୁଅ ଦୁଇଟି ହେଇଥିଲେ ମା'ପରି ଅବିକଳ । ବାପାତ ରେପେଣ୍ଟା ନାକା, କଳା-ପୋଛିଲେ ହାତରେ ଲାଗିବ । ପିଲାଙ୍କୁ ଦେଖି ବୁଢ଼ୀର ଲୋଭ ଲାଗିଥିଲା । ଦେଢ଼ଶୁର ଦୟାକଲେ—ଭାଇତ ଗଲା, ପିଲେ କମିତି ପାଠଶାଠ ପଢ଼ିବେ । ତା ଭାଗ ତାକୁ ଦେଇ ଆଶ୍ରା ଦେଲେ । ନଣାର ଗୁଣ ଜାଣିଲେ । ନଣା ପିଲାମାନଙ୍କୁ ଦୁଃଖେ ସୁଖେ ପାଳିଲା । ତା ଭାଗର ଯେତିକି ଜମିବାଡ଼ି ତାଙ୍କୁ ଅଣ୍ଡିଗଲା । ହଳ-ହଳିଆ, ଜମିବାଡ଼ି କଥା ବୁଝାବୁଝି କରି ବର୍ଷକ ଖାଉଥି ଚଳିଲା । ପିଲାଏ ପଢ଼ାପଢ଼ି କରି ଚାକିରି କଲେ । ପୁଅର ସରକାରୀ ଘରେ ରହିଲା ବୋହୂ ଆଣିଲା ।

ନଣା ଏବେ ବି ଝୁରୁଥାଏ—ପୁରୁଣା ଦିନ ଗୁଡ଼ିକୁ, ସ୍ମୃତି ଗୁଡ଼ିକୁ ମନେ ପକାଏ । ଏମିତି ଅଗିଣ ମାସ ଆସେ... ..

# ପଦ୍ମ

“ଅପା ଲୋ ପେଜପିଆ ପିଲା ଆସି ବସିଛି, ତାକୁ ପେଜ ଦେବୁ ।”

୧୯୪୩ ମସିହା । ଦୁର୍ଭିକ୍ଷ ପଡ଼ିଥାଏ । ବାଲେଶ୍ୱର, ପୁରୀ, କଟକ ଓ ଗଞ୍ଜାମର ଅନେକ ଗାଁ ଗଣ୍ଡାରେ ଲୋକେ ଦୁର୍ଭିକ୍ଷ ମହାମାରୀରେ ମରୁଥାନ୍ତି ।

ଅପା ଡରିଗଲେ ! “ଆଲୋ ଏଇଟା କିଏ ?” କୁମ ହସିପକାଇଲା,—“ଅପା ଚମକିପଡ଼ିଲୁ ପରା ।” କୁମ ପାଞ୍ଚ ବର୍ଷର ଭଉଣୀଟିଏ । ଦାଣ୍ଡରୁ, ବାଡ଼ିରୁ ସାଇ-ପଡ଼ିଶାରୁ କିଏ ଆସିଲା, ଗଲା ଖବର ଦିଏ । ଅପାକୁ ଜଗିଥାଏ । ପେଜପିଆ ପିଲାଟା ଦିନେ ଆସି ବାଡ଼ିରୁ ପେଜ ହାଣ୍ଡିରୁ ପେଜ ପିଇସାରିଛି—ମୁହଁ ଲଗାଇ । ଡିମା ଡିମା ଆଖି ଦି’ଟା, ହାଡ଼ଗୋଡ଼ ସରୁ ସରୁ, ପେଟଟା ଆଗକୁ ବାହାରି ପଡ଼ିଛି । ଲଙ୍ଗଳା ହୋଇଛି । ପାଟିରୁ ପଦେ କଥା ବାହାରୁ ନାହିଁ । ପେଜ ପିଇଦେଇ କୁଆଡ଼େ ଯାଉଛି । ଦିନେ ଦେଖିଲା ପରେ ଅପା ଆଉ ପେଜହାଣ୍ଡିରେ ପେଜ ନ ଢାଳି ତାକୁ ଘରେ ରଖିଥାନ୍ତି । ପେଜପିଆ ଆସିଲାଣି ବୋଲି କୁମ ଅପାକୁ ଖବର ଦିଏ । ପେଜ ଶୀତଳ ହେଲେ, ଅପା ଜାଗାଟିଏରେ ଦିଅନ୍ତି, ସେ ପିଇଦେଇ କୁଆଡ଼େ ଯାଏ । ଧୀରେ ଧୀରେ ପେଜପିଆ ପିଲା କଥା କହିବାର ଶକ୍ତି ପାଇ ଆସୁଛି, ଜାଣି, ଅପା, କୁମ ତା ବାପା, ଭାଇଭଉଣୀ କଥା ପଚାରିଲେ । ତା ନାଁ ପଚାରିଲେ । “ପଦ୍ମ” । ପଦ୍ମକୁ ଆଉ ଜଣେ ଅପା, ସେ ଅପାର ବଡ଼ଭଉଣୀ ଦେଖିଲେ । ତାକୁ ପେଜ ସହିତ ଅଳ୍ପ ଅଳ୍ପ ଭାତ ଦେଲେ । ସେ ଭାତ ଖାଇଲା । ଧୀରେ ଧୀରେ ସବୁ ପ୍ରକାର ମାଛ, ମାଂସ, ଡାଲି ଖାଇଲା । ଆଉ କୁଆଡ଼େ ଗଲା ନାହିଁ । ଅଖା ଦେଲେ । ପାରି ଶୋଇଲା । ବଡ଼ଅପାର ସାନପୁଅଟି ବରଷକର । ପୁଅକୁ ତା ପାଖକୁ ଛାଡ଼ିଲେ । ପୁଅକୁ ଖେଳେଇଲା, କାଖେଇଲା ପଦ୍ମ କାମଦାମ କରିବାକୁ ବୁଝିଲା । ବଡ଼ଅପା ଆସି ତା’ର ଭାଗ୍ୟ ବଧାତା ହୋଇଗଲେ । ପଦ୍ମ ଅପାକୁ ଆଦରି ବିଶ୍ୱାସ କଲା । ଲୁଗାପିନ୍ଧା ଶିଖିଲା । ଆଉ କୁଆଡ଼େ ଗଲାନାହିଁ । ଧୀରେ ଧୀରେ ସକାଳୁ ଉଠି ବାଡ଼ିପଟ ଦାଣ୍ଡପଟ ଓଳେଇଲା, ପୁଅର ମୂତକନା, ମଇଳା ଲୁଗାପଟା ଧୋଇଲା । ସକାଳୁ ଉଠିଲା ବେଳକୁ, ଗଡ଼ରେ ହାଣ୍ଡିଏ ମୂତିଥାଏ । “ମୂତିଦେଲି ଗୋ ଅପା ।” ଅପା କହନ୍ତି, “ହଉ ହଉ ଯା ଅଖାଟା ଖରାରେ ଶୁଖାଇଦେ । ଗୋବର ଆଣି ମୂତ ଜାଗାଟା ଲିପିଦେ ।” ପଦ୍ମ ସେତକ କରିଦିଏ, ବସେ । ବଡ଼ ଅପା ଦିନେ ଦିନେ ପଦ୍ମର ମୁଣ୍ଡ କୁଣ୍ଡାଇଦେବାକୁ ଆସନ୍ତି । “ନାହିଁ ଗୋ ଅପା, ମୁଁ କୁଣ୍ଡାଇବି ଗୋ” “ହଉ କୁଣ୍ଡା” କହିଦେଇ ତା ମୁଣ୍ଡରେ ତେଲ ଦିଅନ୍ତି । ବାଳ କଳା ହୋଇ ଆସିଲା । ତା’ର ରୂପ ଫୁଟିଲା । “ଦେଖିଲୁ ପଦ୍ମ କେଡ଼େ

ସୁନ୍ଦର ।" ପଦ୍ମ ଖିଲ୍ ଖିଲ୍ ହୋଇ ହସିଦିଏ । କହେ, ନାହିଁ ଗୋ··· । ପଦ୍ମ କମିତି ହାଲୁ ପଡ଼ନ୍ତି । ତାର ପାଦ—ଖଲୁର ପାଦ ପରି । ତାକୁ ତା ମା ବାପାର କଥା ପଚାରିବାରୁ ସେ କହିଲା ।

"ମୋ ବାପ କୁଆଡ଼େ ପଳାଇଲା । ମା ସାନଭଉଣୀକୁ ଜନ୍ମଦେଲା । ସାନଭଉଣୀ ତଳେ ଗୋଟିଏ ଭାଇ ଥିଲା, ସେ ମରିଗଲା । ମୁଁ ତ ମୋ ବାପା ମା'ର ବଡ଼ ଝିଅ । ମୁଁ ପିଲାଦିନୁ ବାହା ହୋଇଛି ଗୋ । ମୋର ବର ଅଛି ।"

ଅପା ପୁଣି ପଚାରିଲେ—

"ତୋର ବାପ କୁଆଡ଼େ ଗଲା ?"

ପଦ୍ମ କହିଲା—"କୁଆଡ଼େ ଗଲା କେଜାଣି ମୁଁ ଜାଣିନାହିଁ ।" କିଛିଦିନ ପରେ ତା'ର ମାଆ ଜାଣିପାରି ଆସିଲା । ତା ବର ଘରକୁ ଖବର ଗଲା । ତା'ର ବର ସବୁ ଜାଣିଲା, ପଦ୍ମକୁ ନେବାପାଇଁ ଇଚ୍ଛାକଲା । ଦୁଇବର୍ଷ ହେବ ପଦ୍ମ ରହିଲାଣି । ନିଜ ମା' ଠାରୁ ତା'ର ଅପା ଅଧିକା । ମା' ତାର ଦୁଇଥର ତିନିଥର ଆସିଲା । ପଦ୍ମକୁ ଦେଖି ତାର ମାୟା ଲାଗିଗଲା । କିନ୍ତୁ ପଦ୍ମ ଯିବାକୁ ରାଜି ହେଲାନାହିଁ । ଶାଶୁଘର ଗାଁରେ କିଏ ଦେଖିଦେଲେ, ଆଉ ନେବେ ନାହିଁ । ତାକୁ ଅପା ବାହାରକୁ ଛାଡ଼ିଲେ ନାହିଁ । ସେ ତା' ବର ପାଖକୁ ଯିବା ପାଇଁ, ଅପା ସବୁ ଯୋଗାଡ଼ କରିଦେଲେ । ଅପା କ'ଣ ଦେଉଛନ୍ତି, ବୋଲି ଦେଖିବା ପାଇଁ ତା'ର ମା' ଆସିଲା ।

ଅପା କହିଲେ—"ପଦ୍ମଲୋ ତୋର ମା ତୋତେ ଡାକୁଛି ଯା !" ମାତ୍ର ପଦ୍ମ ନାହିଁ କଲା ।

ବାଉଁଶପାତିଆ ପେଡ଼ିରେ କଳା, ସିନ୍ଦୂର, ଅଳତା, ହଳଦୀ, ପାନିଆ, ଦର୍ପଣ ଆଦି ରଖିଲେ । ନୂଆ ଶାଢ଼ି କିଣିଦେଲେ ।

ମାତ୍ର ସେ ପର୍ଯ୍ୟନ୍ତ ପଦ୍ମ ବିଛଣାରେ ମୁତୁଥାଏ । ଅପା କହିଲେ—"ଆଲୋ ପଦ୍ମ, ଏ ପର୍ଯ୍ୟନ୍ତ ତୁ ବିଛଣାରେ ମୁତିବା ଅଭ୍ୟାସ ଛାଡ଼ିଲୁ ନାହିଁ ? ବର ପାଖରେ ଶୋଇ ମୁତିବୁ । ତେବେ ତୋର ବର କ'ଣ ଆଉ ରଖିବ ?" ଅପାଙ୍କର ଏମିତି କଥା ଶୁଣି ପଦ୍ମ ଖିଲ୍‌ଖିଲ୍ ହୋଇ ହସିଲା ଓ କହିଲା,—"ହଁ ଗୋ ଅପା ଇମିତି କ'ଣ କହୁଛ ବା ?"

ସବୁ ସଜଡ଼ା ହୋଇସାରିବା ପରେ । ପଦ୍ମ ଧବୁଦାନ ପରି ପୁଅକୁ ଖେଳାଇଲା ଓ ଅପାଙ୍କର ପିଲାମାନେ ସାଇତି ରଖିଥିବା କୁକୁର ଛୁଆ, ଠେକୁଆ-

ମାନଙ୍କୁ ଯତ୍ନରେ ରଖିଲା । ସବୁ ପିଲା ଖାଇପିଇ ସାରିବା ପରେ ସେ ଖାଇକରି ଶୋଇଲା ।

କୁକୁରଙ୍କ ପ୍ରତି ଯତ୍ନ ନିଜା ରଖିଲ ମାତ୍ର ସେମାନଙ୍କୁ ସେ ରାତିରେ ଘର ଭିତରକୁ ଆଣି ନଥିଲା ।

ତା' ପରଦିନ ସକାଳୁ ଦେଖିଲାବେଳକୁ କୁକୁର ନାହିଁ । ଗଧିଆ ନେଇଯାଇଛି । ବାଗି କରିକୁ ରକ୍ତ ଥୋପା ଥୋପା ପଡ଼ିଛି । ଅପାଙ୍କର ବଡ଼ପୁଅ କୁକୁରଗୁଡ଼ିକୁ ରଖିଥିଲା । ଅପା ସକାଳୁ ଉଠି କହିଲେ "ଆଲେ ଏ ପଦ୍ମ, କୁକୁରକୁ ଘରକୁ ଆଣିଲୁନ । ଗଧିଆ ତ ନେଇଗଲା ।"

ପଦ୍ମ କହିଲା—"ସବୁଦିନେ ଆଣୁଥିଲି । କାଲି ରାତିରେ ବଡ଼ ଶୀତ ହେଲା, ମୁଁ ଅଣଗଲି । ମୁଁ କ'ଣ କରିବି ଗୋ ? ମୁଁ କ'ଣ ଜାଣିଥିଲି ଗଧିଆ ନେଇଯିବ ବୋଲି ?" ଅପାଙ୍କର ସାତବର୍ଷର ବଡ଼ପୁଅ କାନ୍ଦି କାନ୍ଦି ବ୍ୟସ୍ତ ହେଇପଡ଼ିଲା । ପଦ୍ମକୁ ଗାଳିଦେଇ କହିଲା—"ଏ ଲଣ୍ଡି, ଏ ଲଣ୍ଡି, କାହିଁକି କୁକୁରକୁ ଘରକୁ ଆଣିଲୁ ନାହିଁଲେ ଲଣ୍ଡି ।" ଏହା ଶୁଣି ପଦ୍ମ କହିଲା, "କଅଣ କରିବ ଗୋ, ମତେ ହେଲେ ଦି'ଟା ମାରି ଦିଅ ଗୋ ।" ଏହାପରେ ଅପା ତାଙ୍କ ପୁଅକୁ ବହୁତ ବୁଝାଇଲେ ।

କିଛି ଦିନ ପରେ ପଦ୍ମ ତାର ଶାଶୁଘରକୁ ଗଲା ।

ପଦ୍ମ ତା ଶାଶୁଘରକୁ ଗଲାଦିନ ଯେମିତି ପରିବାରରୁ ଜଣେ ଗଲା । ନିଗୁଣିଆ ଲାଗିଲା ।

ଏ ଭିତରେ ଅପା ନୂଆ ଘର ବଦଳାଇ ସାରିଥିଲେ । କିଛି ମାସ ପରେ ପଦ୍ମ ପୁଣି ଘର ଖୋଜି ଖୋଜି ଆସି ଅପାଙ୍କ ପାଖରେ ପହଞ୍ଚିଲା । ସେତେବେଳେ ସାନଅପା ଗାଁରେ ଥାଆନ୍ତି । ବଡ଼ଅପା ପଦ୍ମକୁ ଦେଖି ତାଙ୍କର ଦୁଇ ଝିଅଙ୍କୁ ଡାକି କହିଲେ—

"ଆସ ଲୋ ଦେଖିବ ପଦ୍ମ ଆସିଛି ।"

ପଦ୍ମ ପାଖକୁ ଦୁଇ ଭଉଣୀ ଗଲେ, ପଦ୍ମ ଏବେ ବଡ଼ ପେଟ କାଢ଼ିଛି । ଅପା ପଦ୍ମକୁ ଘରକୁ ଡାକି ସବୁ ପ୍ରକାର ଖାଇବାକୁ ଦେଲେ । ପଦ୍ମ ଭଲକରି ପେଟେ ଖାଇଲା ଓ ଶୋଇ ପଡ଼ିଲା । ଉଠିଲା ପରେ କହିଲା, ଥାଉ ଗୋ ମୁଁ ସବୁ ବାସନ ମାଜିଦେବି । ଅପା କହିଲେ, ନାହିଁ ନାହିଁ ତୁ ତ ବସିପାରୁ ନାହୁଁ—ମାଜି ପାରିବୁନି । ମାତ୍ର ପଦ୍ମ ସବୁ ଛଡ଼ାଇ ନେଇ ମାଜିଲା । ତା'ପରେ ହାତଗୋଡ଼ ଧୋଇ

କିଛି ସମୟ ବସିଲା । ଅପାଙ୍କ ସହିତ କେତେ ଗପସପ କଲା । ଶାଶୁଘରକୁ ଯିବ ବୋଲି କହିଲା । ତାପରେ ସେ ଚାଲିଗଲା । ତା ପରଦିନ ପଦ୍ମର ମାଆ ଆସି ଅପାଙ୍କ ଘରେ ଖବର ଦେଲା ପଦ୍ମର ପୁଅଟିଏ ହୋଇଛି ବୋଲି । ଅପା ଭାବିଲେ---ତାର କେତେ ଆଶା ଥିଲା ଭଲରେ ଗଣ୍ଡେ ଖାଇବାକୁ !

ପଦ୍ମର ମାଆ ପଦ୍ମ କହିବା ଅନୁସାରେ ଅପାଙ୍କୁ କିଛି କନାପଟା ମାଗିଲା ଓ ଅପା ତା'କୁ କିଛି ପୁରୁଣା ଲୁଗାପଟା ଦେବାରୁ ତାହା ନେଇକରି ତା' ମାଆ ଚାଲିଗଲା । ଅପା ମନେ ମନେ ଭଗବାନଙ୍କୁ ଧ୍ୟାନ କରି କହିଲେ —"ହେ ଭଗବାନ ତୁମେ କପରି ଦୁଃଖୀର ଦୁଃଖ ଦୂର କରୁଛ ।" ହେଲେ ପଦ୍ମ କଥା ମନରୁ ଦୂର ହୁଏନି । ମନ ପଡ଼ିଗଲେ ଆଖି ଛଳ ଛଳ ହୋଇଯାଏ ଅପାଙ୍କର । ଏହାପରେ ଦୀର୍ଘ ୩୫ ବର୍ଷ ବିତିଗଲା । ପଦ୍ମ ପୁଣି ଆସିଗଲା ଅପାଙ୍କୁ ଦେଖା କରିବା ପାଇଁ । ସେତେବେଳକୁ ଅପାଙ୍କ ବୟସ ହେଲାଣି ୮୦ ବର୍ଷ । ପଦ୍ମ ଅପାଙ୍କୁ ଓଳଗି ହେଲା । ଅପା ତାକୁ ଆଶୀର୍ବାଦ କରି ଭଲମନ୍ଦ ପଚାରିବାରୁ ସେ କହିଲା—"ହଁ ଗୋ ଏବେ ମେ ତ ସହରୁଣୀ ମଲା । ମୋର ପୁଅ ବଡ଼ ହେଲାଣି । ନାତି ନାତୁଣୀ ହେଲେଣି ।"

ପଦ୍ମ ପଚାରିଲା, "ଅପା ଗୋ ତମ ଝିଅମାନେ କିଏ କେଉଁଠି ଅଛନ୍ତି, ମୋ ଆଖି ଫୁଟିଯାଉଛି ଗୋ ଦେଖିବାଲାଗି ।" ଅପା କହିଲେ, "ବଡ଼ ତ ଭୁବନେଶ୍ୱରରେ, ସାନ ଯାଇ ବାହାରକେଲ ।"

ସବୁ ଶୁଣି ଅପା ଖୁସିହେଲେ । କହିଲେ --"ହଉ ! ହଉ ! ଏବେ ସ୍ୱାମୀ, ସ୍ତ୍ରୀ, ପୁଅବୋହୂ ନେଇ ଭଲରେ ରୁହ । ସୁଖୀ ହୁଅ ।" ପଦ୍ମ ଚାଲିଗଲା ।

ପୁଣି କିଛିଦିନ ପରେ ପଦ୍ମ ଅପାଙ୍କ ଘରେ ଆସି ପହଞ୍ଚିଲା । ତାକୁ ସାନଅପା କହିଲେ—"ବଡ଼ ଅପାଙ୍କର ସ୍ୱର୍ଗବାସ ହୋଇଗଲାଣି ।" ଏହା କହି କାନ୍ଦି ଉଠିଲେ । ପଦ୍ମ ମଧ୍ୟ ଭେଁ ଭେଁ କରି କାନ୍ଦି ଉଠିଲା । ଆଗପରି ଅପାଙ୍କ ଘରେ ବେଶୀ ସମୟ ରହିଲାନି । ଖାଇଲାନି । କାନ୍ଦି କାନ୍ଦି ଏକମୁହାଁ ଚାଲିଗଲା ।

# ପଞ୍ଚମ ଅଧ୍ୟାୟ

ଶରତ ଆକାଶ ଜ୍ୟୋସ୍ନା ପ୍ଲାବିତ । କୁମାରୀ ଲଳନାଗଣ କୁମାର ପୂର୍ଣ୍ଣିମୀ ପାଳୁଛନ୍ତି । ଇନ୍ଦ୍ର ପୂର୍ଣ୍ଣିମୀଠାରୁ କୁମାର ପୂର୍ଣ୍ଣିମୀ ପର୍ଯ୍ୟନ୍ତ ମାସକଯାକ କାର୍ତ୍ତିକେଶ୍ୱର ଶେଷ ହେଉଛି । ଯେଉଁକ ମଧ୍ୟ ପୂର୍ବ ଉଦନମାନଙ୍କ ପରି ସଞ୍ଜ ହେବା ଆଗରୁ ଚଉରା ଲିପାପୋଛା କରି, କାର୍ତ୍ତି ଫୁଲରେ ମଣ୍ଡିଆନ୍ତି ବିଷ୍ଣୁରାଣୀ ବୃନ୍ଦାବତୀଙ୍କୁ । ଉଦନସାରା ନିର୍ଜଳା ଉପବାସ । ଏଣେ କୁମାରଙ୍କ ପୂଜା, ଦ୍ୱିତୀୟରେ ଚନ୍ଦ୍ର ଉପାସନା । କୁମାରୀ-ମାନଙ୍କର ଦୁଇଟିଯାକ ପୂଜା । ଗୃହିଣୀ, ମଧ୍ୟମା, ପ୍ରୌଢ଼ାମାନଙ୍କର କେବଳ ଚନ୍ଦ୍ର ଉପାସନା । ବର୍ଷା ଗ୍ରୁଡ଼ଯାଇଛି ସେଉଁକ । ଡାଲି, ସୁଙ୍ଗୁଡ଼ି, ଥାଳରେ ନଡ଼ିଆ, ପାଚିଲା କଦଳୀ, ଉଖୁଡ଼ା କାକୁଡ଼ି, ରସିକଡ଼ୁ, ମୁଡ଼ୁକି ବା କାକରା ଇତ୍ୟାଦି ଯେଝା ଯେଝାର ପୂଜା ସାମଗ୍ରୀମାନ ନେଇ ସମସ୍ତେ ଆସିଗଲେଣି । ଅଗଣାରେ ବସିଗଲେଣି । ପୋଥି ଧରି ପୁରୋଧା ଅପେକ୍ଷା କରିଛନ୍ତି । ସାଆନ୍ତାଣୀ ପୂଜାସ୍ଥଳୀରେ ଆସି ବସିଲେ ପୋଥି ପଢ଼ା ହେବ ।

ସାଆନ୍ତାଣୀ ପାଣି ଟିକିଏ ତ ମୁହଁରେ ଦବା ଦୂରେ ଥାଉ, ଛେପ ମଧ୍ୟ ଢୋକି ନାହାନ୍ତି ସେଉଁକ । କର୍ମରତ ଅଛନ୍ତି ପୂଜା ପାଇଁ । ଯେତେ ଯାହା କରିବାର କରିଛନ୍ତି ଉଦନସାରା । ସାଇର ନାରୁଣୀମାନେ, "ଆସ ଆସ ମା" ଡାକିଗଲେଣି । "ଚାଲ । ଚାଲ ଯାଉଛି । ପୋଥି ଆରମ୍ଭ କରିବାକୁ ବ୍ରାହ୍ମଣଙ୍କୁ କୁହ । ମୁଁ ଆସୁଛି" । ଏତିକି-ବେଳେ ଦୁଇବର୍ଷର ନାରୁଣୀଟିଏ କାନ୍ଦିଲା, "ମା ପିଠା ଦେ, ଖାଇବି" । ସାଆନ୍ତାଣୀ ପିଠାଟିଏ ଦେଇସାରି ଅଗଣାକୁ ଆସୁଛନ୍ତି, ଘର ଭିତରେ ଝୁଣ୍ଟିପଡ଼ି ପଡ଼ିଗଲେ । ବୋହୂ ଆସି ଦେଖି ଡାକିଲେ ।

"ମା' ମା', ଉଠ, ଉଠ ।"

ସାଆନ୍ତାଣୀ ଶୁଣୁନାହାନ୍ତି । ବୋହୂ, ଝିଅ, ଝିଆରୀଙ୍କି ଡାକ ପକେଇଲେ । ସେମାନେ ପୂଜାସ୍ଥଳୀରୁ ଉଠି ଆସିଲେ । ସମସ୍ତଙ୍କର ଗୋଟିଏ ପ୍ରଶ୍ନ, କ'ଣ ହେଲା ? କ'ଣ ହେଲା ? ବୁଢ଼ା ଆସି ପାଖରେ ବସିପଡ଼ିଲେ ।

ଆକାଶ ଆହୁରି ପରିଷ୍କାର ହୋଇଗଲା । ଶଙ୍ଖ ହୁଳହୁଳି ଧ୍ୱନିରେ କମ୍ପିଉଠିଲା । ପୁରୋହିତ ପୂଜାବିଧି ଶେଷ କରିଦେଲେ । ନାରୁଣୀ କାନ୍ଦୁଛି, "ମା ଉଠ୍, ଉଠ୍" । ଅନ୍ୟୋଣୀଙ୍କି ଘର ଭିତରେ ସଜ କରିଦେଲେ । ଗାଧୋଇଦେଇ ନୂଆ ଶାଢ଼ୀ ପିନ୍ଧାଇ ଦେଲେ । ବଡ଼ ଯାଆ ଆସିଗଲେ ।

"ଏତେ ବଡ଼ ଧନଟିଏ ପାଇଗଲୁ ନା ! କେଡ଼େ ଭାଗ୍ୟବନ୍ତୀଟି ତୁ ।" ଅନ୍ୟ ଡଙ୍ଗୁରା ବାଜିଲା । ବୁଢ଼ା ସାଆନ୍ତେ ଆଗେ ଆଗେ ଚାଲିଲେ, ଲୁଆ କଉଡ଼ି ବର୍ଷି ବର୍ଷି । ନୂଆ ଆଲୁଅ ଅନ୍ତର ପରିଷ୍କାର ଦେଖାଯାଉଥିଲା । ସଚ୍ଚିଦାନନ୍ଦ ହସୁଥିଲେ । ବିରାଟ ଅମ୍ବ ତୋଟା ଭିତରେ ହୁ ହୁ ଜଳୁଥିଲେ ସାଆନ୍ତାଣୀ । ଧାରଶ୍ରାବଣ ଛୁଟୁଥିଲା କୁମାରୀମାନଙ୍କ ନୟନରୁ । ମା' ମା' ହଉଥିଲେ ବସି ।

ସେତେବେଳେ ବିଜୁଳି ଆଲୁଅ ନ ଥିଲା । କୋଉଠି କମିଶ ଡିବିରି ଲଣ୍ଠନ ଜଳୁଥିଲା । ସବୁ କାରବାର ଜହ୍ନ ଆଲୁଅରେ---ବସିବା, ଉଠିବା, ଖାଇବା, ହସିବା ଖେଳିବା । କୁମାର ଉତ୍ସବ ଦିନ ଖେଳ । ବିଭିନ୍ନ ପ୍ରକାର ଖେଳ । ଖେଳି ଖେଳି ରାତି ପାହିଯିବ । କେତେଦିନ ରାତିରେ ଆଉ ଖେଳି ପାରିବାହାନ୍ତି କେହି । ସାଆନ୍ତାଣୀଙ୍କୁ ପୁରୁଷ, ଝିଅମାନେ, ପୁରୁଷ ବୋହୂମାନେ ଡାକୁଥିଲେ, "ବେ ଉଖୁଡ଼ୀ" । ଖାଲି ବୋହୂ ଡାକୁଥିଲେ, 'ସାଆନ୍ତାଣୀ' । ସେଇ ରାତିରେ ସମସ୍ତେ ଏକାଠି ବସି ବସି କଥା ହଉଥିଲେ । ପୁରୁଷବୋହୂ ମାନେ କହୁଥିଲେ,

"ବୋଉଖୁଡ଼ୀଙ୍କର କି ମରଣ ! କି ପୁଣ୍ୟ ତପସ୍ୟା, ସାଧନା ତାଙ୍କର ! ଏଇ ପୂର୍ଣ୍ଣିମୀ ରାତିରେ ଚନ୍ଦ୍ରଲୋକରେ ମିଶିଗଲେ ।" ନାରୁଣୀମାନେ ଆଶ୍ଚର୍ଯ୍ୟ ହୋଇ ଅନଉଥାନ୍ତି । ବେ ହୂମାନଙ୍କର ଦେହ ଶିହରି ଉଠୁଥାଏ । ସାଆନ୍ତାଣୀ ବୋଉ–ଖୁଡ଼ୀଙ୍କର ଆତ୍ମା ଯେମିତି ଚନ୍ଦ୍ରାଲୋକରେ ବିଚରଣ କରୁଛି । ପୁଣି ଭାବୁଥାନ୍ତି, 'ନା, ନା, ସିଏ କ'ଣ ଅଉ ଆଛନ୍ତି ? ଆମେସବୁ ସିମିତି ଭାବୁଛେଁ ନା ! ଆମକୁ ସେ ରୂପଗୁଡ଼ା ଦିଶିଯାଉଛି ।"

ତାଙ୍କର ପୁଅ ଝିଅ ହୋଇନଥିଲେ । ରୂପମତୀ ଥିଲେ । ଅନ୍ୟ ଜାଗାରୁ ପୁଅ କରିଥିଲେ । ବୋହୂ ଆଣିଥିଲେ । ବୋହୂକୁ ଗଞ୍ଜଣା ଦେଇଥିଲେ ମଧ୍ୟ । ଦୁଇବର୍ଷର ନାତୁଣୀଟିକୁ ବହୁତ ଭଲ ପାଉଥିଲେ । ସେ ବୋଉକୁ ଛାଡ଼ି ମା ପାଖରେ ଶୋଉ-ଥିଲା । ବୋହୂ ଲାବଣ୍ୟବତୀ, ସୁହସ୍ତୁ ଥିଲେ । ଶିକ୍ଷିତା ଥିଲେ । ଅକ୍ଷର ଲେଖୁଥିଲେ ଛପାହେଲା ଅକ୍ଷର ପରି । ରାମାୟଣ ମହାଭାରତ ଶୁଣିବାକୁ ପଡୋଶୀ ମହିଳାମାନେ ବସିଯାଉଥିଲେ ଦ୍ୱିପ୍ରହରବେଳେ । କୁମାରପୂର୍ଣ୍ଣିମୀ ପରଦିନ କାର୍ତ୍ତିକ ମାସ ଆରମ୍ଭ ହେଲରେ ପୁରୋହିତ ଆସି "କାର୍ତ୍ତିକ ମାହାତ୍ମ୍ୟ" ଆରମ୍ଭ କରିଥାଆନ୍ତେ ।

ପୁରୋହିତ ଚଉରା ପାଖରେ ପିଢ଼ା ପକାଇ ବସିବେ । ତାଳପତ୍ର ପୋଥିରୁ ପଢ଼ିବେ । କେତେ ଦୂରରୁ ଛୋଟ ଖୁଡ଼ି ପ୍ରୌଢ଼ା ଆଉ ବୃଦ୍ଧାମାନେ ବସି ପୁରାଣ ଶୁଣିବେ । କାର୍ତ୍ତିକ ମାହାତ୍ମ୍ୟ ପଢ଼ାହୁଏ । ଜଳନ୍ଧର ମରେ । ଜଳନ୍ଧର ସ୍ତ୍ରୀଙ୍କୁ ଭଗବାନ ଶ୍ରୀକୃଷ୍ଣ

ଜଳନ୍ଧର ବେଶରେ ହରଣ କଲେ । ଜଳନ୍ଧର ପତ୍ନୀ ଜାଣିପାରି ଭଗବାନଙ୍କୁ ଅଭିଶାପ ଦେଲେ । ଭଗବାନ ଲଜ୍ଜା ପାଇ ଶରଣ ଗଲେ । ବୃନ୍ଦାବତୀଙ୍କୁ ମଥାରେ ଧଇଲେ । ସେଥର ପୂର୍ଣ୍ଣିମୀଠାରୁ ବାର ଦିନ 'କାର୍ତ୍ତିକ ମାହାତ୍ମ୍ୟ' ପଢ଼ା ବନ୍ଦ ଥିଲା ।

କେକେମା ଚଲାପରେ ନାଣୁଣୀ ଅରୁଣାଟି ବୁଢ଼ାବାପା ପାଖେ ବସି ଉଠି କଣେଇ ଖେଳ ଖେଳେ । କୁଆ ଟିଙ୍କି ପକାଇ ଧାନ ପଣି ବୁଟେ । ତା ବୟସର ପଡ଼ୋଶୀ ବ୍ରାହ୍ମଣ ଝିଅମାନଙ୍କ ସାଙ୍ଗରେ ଖେଳେ । ସାତ ବରଷରୁ ଘୋଷେଇ ଶିଖିଲା । ତା ବୋଉଙ୍କ ଦେହ ଭଲ ରହୁ ନଥିଲା । ଗୁଣ୍ଡରୁ ଅବକ ଉଠାଏ ତ, କେବେ ମୁଣ୍ଡ ବୁଲାଏ । ଅରୁଣା ସାଙ୍ଗସାଥୀଙ୍କ ସହିତ ପୋଖରୀକୁ ଯାଇ ଲୁଗାପଟା ଧୋଇଆଣେ । ଘରେ ହଳିଆମାନେ କାମଦାମ କଲେ ମଧ୍ୟ, ସେ ଘୋଷେଇ କାମଟି କରିବ । ବାପା ତ'ାର ଗାଈ ଦୁହନ୍ତି । ବଡ ମାଛ କାଟି ଦିଅନ୍ତି । ବୋଉ ଭଲ ଥିଲାବେଳେ କାମ କରନ୍ତି, ନଚେତ୍ ସେ କରୁଥାଏ । ବୋଉ ଘର କାମ କରନ୍ତି ସତ, ମାତ୍ରଟିକେଏ ସୌଖୀନ ଥାଆନ୍ତି । ବିଭିନ୍ନ ପ୍ରକାରର ଅଳଙ୍କାର ପିନ୍ଧି, ଜୁଡ଼ାରେ ଫୁଲମାଳା ଲଗାଇ, ପରିଷ୍କାର ପରିଚ୍ଛନ୍ନ ହୋଇ, ବସି ପୁରାଣ ପଢ଼ନ୍ତି । ବିଭିନ୍ନ ପ୍ରକାର ଗୁମ୍ଫା ଚୌପଦୀ ଲେଖନ୍ତି । ସାନ୍ଧ୍ୟାହ୍ନ ଅରୁଣାଟି ବୋଉକୁ ଏ ପ୍ରକାର ଦେଖି ଖୁସି ହୁଏ ।

ଅରୁଣା ବର୍ଷକୁ ବର୍ଷ ବଡ ହେଉଚ । ସ୍କୁଲ ପାଠ ସରିଲାଣି । ପର୍ବ ପର୍ବାଣୀ, କେକେମା କେକେବାପାଙ୍କ ଶ୍ରାଦ୍ଧ, ମହାଳୟା ଶ୍ରାଦ୍ଧ, ପୁନେଇଁ, ଓଷା ଉପାସରେ ବୋଉ କରନ୍ତି । ପାଖରେ ପଣ୍ଡାଶା ଘର ସବୁ ବ୍ରାହ୍ମଣ । ସେମାନଙ୍କର ବୋହୂଟିଏ ବହୁ କାମରେ ସାହାଯ୍ୟ କରନ୍ତି । ବାପା ତ ଗାଁର କରଣ । ପ୍ରତିଦିନର ରନ୍ଧା ଖୁବ୍ ଅଳ୍ପ ଅଳ୍ପ । ବାପା ବୋଉ, ଅରୁଣା ଓ ତ'ାର ସାନ ଭଉଣୀଟି । ବାପାଙ୍କର ମାଛ ନହେଲେ ନ ଚଳେ । ଶେଉଳ, ବାଳିଆ, ମାଗୁର, ଶେଙ୍ଗ, ଗଡ଼ିଶା—ଏଇତ ପାଣି ମାଛ, ପୋଖରୀ ମାଛ, ନଈମାଛ । ବଣରୁ ଆସିଥିବା ମୃଗ ବା ସମ୍ବର ମାଂସ କେବେ କେବେ ହୁଏ । ଛେଳି ମାଂସ ମଧ୍ୟ ହୁଏ । ଘରେ ଗାଈ ଖିର । ବୋଉଙ୍କର ତାର ଖିର ଘିଅ, ପରିବା ପତ୍ର ତରକାରି । ଅରୁଣା ଏସବୁ ଚଳେଇନିଏ । ଆରପାଇ ଆଡେ ବୁଲିଯାଏ ଦିନେ ଦିନେ ଅରୁଣା । ଅପା ଭାଉଜମାନଙ୍କ ସହିତ ହସ ଖେଳ କରି ବୋଉ ପାଖକୁ ଫେରିଆସେ । ସାନଭଉଣୀଟିର କାମଦାମ ଭାର ତ'ାର ଉପରେ । ତାକୁ ଗାଧୋଇଦବା, ଖୁଆଇଦବା ସବୁ ଭାର ସିଏ ନିଏ । ବୋଉ ଶୋଇଲେ ପଙ୍ଖା କରିଦବା, ବୋଉ କଅଣ ଖାଇବ ତା କଥା ବୁଝିବା, ବାପାଙ୍କ ଖିର ପିଇବା ସବୁ କଥା ଅରୁଣା ବୁଝେ । ବୋଉ ତାଙ୍କର ନିଜ ପାଇଁ ପାନ ଭାଙ୍ଗିବେ, ବାପାଙ୍କ ପାନ ଭାଙ୍ଗିବେ । ବୋଉ ଚିନ୍ତା କରନ୍ତି— ଅରୁଣାକୁ ବାହାଦେଲେ କିମିତି ଚଳିବେ ? ପାଖ ଗାଁରେ

କୋଉଠି ହେଲେ ହେବେ ବୋଲି ବୋଉ ବାପା ଠିକ୍ କଲେ । ପାଖରେ ଥିଲେ କେତେବେଳେ ଡାକଲେ ଆସିବ ।

ପାଞ୍ଚ ଟାର ଚୋଟିଏ ପୁଅ, ଦୁଇଟି ଝିଅ, ମା'ଟିଏ ଅଛନ୍ତି । ଭଲ କୋଠା-ଘର । ବାହାଘର କଲେ । ବରର ବୟସ ବହୁତ ବେଶୀ ଅରୁଣାଠାରୁ । କଏ କଏ ଆଗରୁ କହୁଥିଲେ, ଏତେ ଭଲ ଝିଅକୁ ଏତେ ବୟସର ଲୋକକୁ କାହିଁକି ବାହା ଦବ ? ଯା'ହଉ ତା ଭାଗ୍ୟରେ ତ ଅଛି ।

ଅରୁଣା ଭଲ ବୋହୂଟିଏ ହେଲା । ତା' ଶାଶୁଙ୍କର ମନଲାଖି ବୋହୂ । ନଣନ୍ଦ ଦୁହେଁ ବାହା ହେଇଗଲେ । ଗୁଣ ପାଞ୍ଚ ବର୍ଷ ପରେ ପୁଅଟିଏ ହେଲା । ଅବିକଳ ତା'ର ପର । ଆଉ ଚୋଟିଏ ପୁଅ ହେଲା । ବାପା ପର । ସାଇବ ପରି ଗୋରା, ଚଇଁ ଆଖି । ଆଉ ଚୋଟିଏ ପୁଅ, ତା ଅଜାଙ୍କ ପର । ସାନ ପୁଅଟି ତିନି ବର୍ଷର, ବାପା ତା'ର ଗୁଲିଗଲେ । ଶାଶୁ, ଦେଢ଼ଶାଶୁ ଦୁ'ଜଣ ଗଲେ । ଅରୁଣା ସବୁ ଭାର ନେଲା । ସାନ ପୁଅ ଦିନେ କହିଲା, "ବୋଉ, ବାପାଙ୍କୁ ତ ଦେଖି ପାରିନାହିଁ । ତାଙ୍କ ଫଟ ଦେଖିବି ।" ସାଙ୍ଗ ସାଥୀଙ୍କ ଗ୍ରୁପ୍ ଫଟୋ ଭିତରୁ ଫଟ ଉଠେଇବାର ବ୍ୟବସ୍ଥା କଲା ଅରୁଣା । ବଡ଼ ପୁଅ ଭଲ ପାଠ ପଢ଼ିଲା । ମାଟ୍ରିକ ଫାଷ୍ଟ ଡିଭିଜନ ପାଇଲା । ବ୍ୟାଙ୍କରେ ଚାକିରି କଲା । ମଝି କଲେଜରେ ପାଠ ପଢୁଥାଏ । ଆଇ. ଏ., ବି. ଏ. ପାସ କଲା । ଅରୁଣା ପୁଅ ପାଖରେ ରହେ, ଗାଁ ଘର ଦେଖେ । ଚଷାକୁ ଧରି ଧାନ, ମୁଗ, ହରଡ଼, ଚିନାବାଦାମ କରାଏ । ଖରାଦିନେ ତୋଟାରୁ ଆମ୍ବ ଅଣେଇ ଆମ୍ବର ଆମ୍ବୁଲ କରେ । ଜମିବାଡ଼ି ତୋଟା ଅଛି । ଶଶୁର କରେଇ ଥିଲେ । ଭଲ ଘର ଅଛି । ଅଧା ଘର ଭଡ଼ା ଲଗାଇ ଅଧା ଘରେ ରହୁଛି । ମଝିଆଁ ପୁଅ ଗାଁରେ ଥାଏ । ଅରୁଣା ଏପାଖ ସେପାଖ ହଉଥାଏ— ଗାଁକୁ, ସହରକୁ ! ପୁଣି ବାପ ଘରକୁ । ସାନଭଉଣୀଟି ତା'ର ବାହାହେଇ ସାତଟି ପିଲାର ମା । ବୋଉକୁ ମନେପକାଇ କାନ୍ଦେ ଅରୁଣା । ଭାଉଜ ଦିଜଣ ଜଣେ ଗାଁରେ ଜଣେ ସହରରେ । ଅରୁଣା ଦେହରୁ ବଳ ଗଲାଣି । ପିଲାଦିନର ସାଙ୍ଗ ଭଉଣୀ ଶ୍ୱେତା ପାଖକୁ ବରଷ ଛ'ମାସରେ ଥରେ ଭେଟିବ ଆସେ । ମନଖୋଲି କେତେ କଥା କହେ ।

'ଆଉ ବଳ ନାହିଁରେ ଶ୍ୱେତା । କୋଉଦିନ ଭଲରେ ମରିବ, ହାତଗୋଡ଼ ଚଳୁଥିବ ।'

ଶ୍ୱେତା କହେ, 'କାହିଁକି ଏମିତି ମରୁଛୁ ମ ! ବୋଉ, ନାତି ନାତୁଣୀ ହେଲେ । ନାତି ତ ମା ମା ଡାକିଲେ ସରଗ ଯାଉଛୁ । ଏକାମ ସେକାମ କାହିଁକି କରିବାକୁ ହଉଛୁ ? ଖିଉଥାଅ ବସ୍ ।'

"କେମିତି ବସିକି କହୁଚୁ ଯେ ! ଗାଁରେ ସିଆଡ଼େ ଘରର ଜୋର କମିଲାଣି । ଜୋଉ ଦିନର ଘର ! ସେଠିକି ଗଲେ ତାକୁ ଜରେଇବ । ଆଉ ତିଂଟା ପୁଅ ତ ଭଲ ପଢ଼ିଲେ ନାହିଁ । ସେମାନେ କେମିତି ଚଳିବେ ? ଏଥର ହେଡକ୍ଲାର୍କ ସିନା । ବ୍ୟାଙ୍କ ଗ୍ରୁକଶରେ ପ୍ରମୋସନ ହେଲାଣି । ଭଲ କ୍ୱାଟର୍ସ ପାଇଲାଣି—ଆଗେ ସିନା ଭଡ଼ାରେ ଥିଲେ ! ଝିଅଟିଏ ଲାଗି ଝୁରୁଥିଲା । ନାତୁଣୀ ହେଲାଣି ।"

ବେଳେବେଳେ ଅରୁଣା ତା ବରର ଗୁଣ ଗାଏ । ଭଣଜା ତା'ର ଡାକ୍ତର । ଭଣଜା ବୋହୂ ଡାକ୍ତରଣୀ । ବଡ଼ ନଣନ୍ଦ ତାର ବେଶ୍ ଭଲ । ଘର ଦୁଆର କରି ଭଡ଼ା ଲଗେଇ ଦେଇ ପୁଅ ବୋହୂଙ୍କ ପାଖକୁ କୁଆଡ଼େ ଦୂରକୁ ଗଲେଣି । ଏଇପରି ସବୁ କହୁ କହୁ ଅରୁଣା କହେ ଶ୍ୱେତାକୁ :

"ସାତ ବରଷ ହେଲୁ ଚୁଲି ଝାଣ୍ଟି ଧଇଲି । ବୋଉ ତ ସବୁବେଳେ ରୋଗଣୀ ହେଲା । ଶାଶୁଘର ଆସିଲି । ସେ ଥିଲାବେଳେ କି ସୁଖ ପାଇଲି ! ଅଳପ ଦିନ । ସେ ଗଲାଦିନୁ କ'ଣ କହିବି ଲୋ ଭଉଣୀ ! ସବୁ ଦାୟିତ୍ୱ ତ ମୁଣ୍ଡ ଉପରକୁ ନେଲି । ଶାଶୂ, ବୁଢ଼ୀ । ପିଲାଟିମାନଙ୍କୁ କେମିତି ଦାଣ୍ଡରେ ଠିଆ କରିବି ? ନାଁ ଭଲ ଖାଇବା ନାଁ ଭଲ ପିନ୍ଧିବା । ବଡ଼ ପୁଅଟିକି କେତେ ଚନ୍ତା ଦେବ ? ମୋ ଦୁଃଖ ସେ ସହୁ ପାରେନି । କଅଣ ନ ଥିଲା ବାପା ବୋଉଙ୍କର ? କଅଣ ନଥିଲା ଶାଶୂ ଶ୍ୱଶୁର ସ୍ୱାମୀଙ୍କର ? ତେବେ କପାଳ ଲିଖନ, କେ କରିବ ଆନ !"

ଅରୁଣା ଯେତେବେଳେ ଦଶ ବର୍ଷର ଝିଅ ଶ୍ୱେତା ଆଠ ବର୍ଷର । ଶ୍ୱେତାକୁ ସେ ବୁଲେଇ ଆଣେ ଏ ସାଇରୁ ସେ ସାଇକୁ । ଅରୁଣା ଆସିଛି ଶୁଣିଲେ, ଶ୍ୱେତା ଯୋଉଠି ଥାଉ ଆସିବ । ଶ୍ୱେତା ଅରୁଣା ପାଖକୁ ଗଲେ, ଶୋଇଥିଲେ ଉଠିଆସିବ । ପଡ଼ଶା ଘରକୁ ଯାଇଥିଲେ, ଫେରିଆସିବ । ଆଗ କହିବ—ଆ ଖାଇବା । ଶ୍ୱେତା ହଁ ନାହିଁ କରୁ କରୁ ବସିଯିବେ ଦି ଭଉଣୀ । ଶ୍ୱେତା ବୋଉ ଅରୁଣାର ବୋଉ ଏକା ସାଥିରେ ବାହାହୋଇ ଆସିଥିଲେ । ଶ୍ୱେତାଘର ଗାଁ ମୁଣ୍ଡ ବାହାରକୁ ଚାଲି ଯାଇଥିଲେ । ଅରୁଣା ଘର ଗାଁରେ ଥିଲେ । ଅରୁଣା ବାହା ହବାର ଦୁଇ ବର୍ଷ ପରେ ଶ୍ୱେତାଘର ଗାଁକୁ ଆସିଥିଲେ । ସମସ୍ତେ ଯାଇ ଅରୁଣାକୁ ଦେଖିଥିଲେ ।

ତା'ପରେ କୋଡ଼ିଏ ବର୍ଷ ପରେ ଦି ଭଉଣୀଙ୍କର ପୁଣି ଦେଖାହେଲା । ସାତକପାଳ ଶ୍ୱେତା ଗାଁର କିଏ କୋଉଠି ଅଛନ୍ତି ପଚାରୁଥାଏ । ଅରୁଣା ସବୁ କହୁଥାଏ । ଏତେଦିନେକେ ଦେଖାହେଲାରେ ଦୁଃଖ ଆନନ୍ଦରେ କାନ୍ଦୁଥାଏ ଅରୁଣା, ଆଉ କହୁଥାଏ, "ଅପାର ଏଇ ଅବସ୍ଥା ଦେଖିବାକୁ ଆସିଲୁ ?" ଦିନଟିଏ ରହି ଫେରି ଯାଇଥିଲା ଶ୍ୱେତା । ପୁଣି ଦଶବର୍ଷ ପରେ ଦେଖାହେଲା ।

ସେତେବେଳକୁ ଶ୍ୱେତା ଭୁବନେଶ୍ୱରରେ । ଅରୁଣାର ବଡ଼ ପୁଅ ବି ଭୁବନେଶ୍ୱରରେ । ପୁଅର ବାସାଘର ପାଇଁ ଅରୁଣା ଆସିଥିଲା । ଖୋଜି ଖୋଜି ଶ୍ୱେତା ବସାରେ ପହଞ୍ଚିଥିଲା । ଶ୍ୱେତା ଗାଁ, ଗାଁ ସ୍କୁଲ ସାଙ୍ଗମାନଙ୍କ କଥା ପଚାରୁ-ଥିଲା । ଅରୁଣାର ବାପାଙ୍କ କଥା ପଚାରିଥିଲା । "ସେ ଅଛନ୍ତି, ବୁଢ଼ା ହେଲେଣି । ପୁଅ ବୋହୂ ନାତି ନାତୁଣୀ ଧରି ଅଛନ୍ତି ।" ଶ୍ୱେତା କହିଥିଲା, "ଅପା ମ ! ପିଲାଦିନ କଥା ମନେ ପଡ଼ୁଛି । ଶିକାରୁ ଖିର ଆଣିବୁ । ଚୁଲି ଉପରେ ହାଣ୍ଡିରେ ଏଣ୍ଡୁରି ପିଠା ବସିଥିବ । ଦି ଛନଟା ଆଣିବୁ । ଗୁଡ଼ ପୁଳାଏ ଆଣିବୁ । ମିଶିକରି ଖାଇବା ଗରମ ଗରମ । ତମର ଶ୍ରାଦ୍ଧ ହୁଏ । ତୁ ଡାକିଆସି ଠିଆହେବୁ, କହିବୁ—ମାମା, ଶ୍ୱେତା ଯିବ ଖାଇବାକୁ । ବୋଉ କହିବ, ଶ୍ୱେତା ଯାଇ ଖାଇବ ଯେ ତାକୁ ଡାକ୍ । ମୁଁ ନାହିଁ କରିପାରେନି । ଦାଦା ପଟ ଆଣି ପକାଇଦେବେ, ବସ ଲୋ ମା କହି ବାଢ଼ି ଦେବେ । ସ୍ୱତ ଡାଲି ବେଶର ଆମ୍ବିଳ ଖିରି ତରକାରି । ବସି ପିଠା ଶେଷରେ । ଆଗ ଆଗ ପାଟିରେ ଟିକିଏ ଟିକିଏ ଚୁଷିବି । ପିଠା ଖିରି ଖାଇଦେବି । ଆଉସବୁ ଛାଡ଼ି ଦେଇ ଉଠି ପଡ଼ିବି । ଖୁଡ଼ୀ ଆସିବେ ପାଖକୁ, ଏ ମା ! ଏ କଅଣ ? କିଛି ତ ଖାଇଲ ନାହିଁ । ତୁ କହିବୁ, 'ମାମା ତ କହୁଥିଲେ—ଏଇଟା କଅଣ ଖାଇବ ଯେ ଡାକୁଛୁ ? ମୁଁ ଯାଇ ତୋ ପାଖରେ ଠିଆ ହେବି । ତୁ ଆମ ଘରେ ଛାଡ଼ି ଦେଇ ଯିବୁ । କହିବୁ, ମାମା ! କିଛି ଖାଇଲା ନାହିଁ ଲୋ । ଖାଲି ତ ଖିର ପିଇବ ! ଆମେ ଯେଉଁଦିନ ଗାଁ ଛାଡ଼ି ଆସିଲୁ, ତୁ କହିଲୁ—ଯା'ଲୋ ଶ୍ୱେତା ! ତାପରେ ତୁ କଅଣ କଲୁ ?"

ଅରୁଣା କହେ, "କହନା ଲୋ ସେ କଥା ଆଉ । ଯେତେ କାନ୍ଦୁଛୁ !"

ଥରେ ଶ୍ୱେତାର ବୋଉ ତା ପାଖକୁ ଆସିଥାନ୍ତି । ଅରୁଣାକୁ ଦେଖିବାକୁ ମନ କଲେ । ଶ୍ୱେତା ସାନ ପୁଅକୁ ପଠେଇଲା—ଗଲୁ ମାଉସୀଙ୍କି ଡାକି ଆଣିବୁ । ଶ୍ୱେତା ଚାହିଁ ରହି ରହିଥାଏ । ପୁଅ ଫେରିଆସିଲା । କହିଲା, 'ମାଉସୀ, କହିଲେ, ତୁ ଚାଲ । ଦେହ ଭଲ ନାହିଁ । ଆସିପାରିବେ ନାହିଁ ।' ଶ୍ୱେତା ଗଲା । ଅରୁଣା ବିଛଣାରେ ଶୋଇଥାଏ । ଶ୍ୱେତାକୁ ଦେଖି ବଡ଼ କଷ୍ଟରେ ଉଠି ବସିଲା । ଶ୍ୱେତା

ଯାଇଁ ଖଟ ଧାରରେ ବସିପଡ଼ି, ଅରୁଣାକୁ ପୁଣି ଶୁଆଇଦେଲେ । କାନ୍ଦୁ କାନ୍ଦୁ ଅରୁଣା କହିଲା, "ଶ୍ୱେତା ଲୋ ! କେତେ ଦୁଃଖ ସହି ପିଲାଟିମାନଙ୍କୁ ପାଳିଲି । ଏଣିକି ଗୋଡ଼ ଗଣ୍ଠି ଫୁଲିଲା । ସବୁବେଳେ ଔଷଧ ଖାଉଚି । ପାଦ ଜଳୁଚି । ଛାତିକୁ ପବନ ଉଠାଉଛି । କାମଦାମ କିଛି କରିପାରୁ ନାହିଁ । ମୁଁ ସିନା କାମ କରିପାରିଲେ ତା ପାଖକୁ ଯାଇଥାନ୍ତି । ନାହିଁ କରି ଦେଲି ଲୋ, ସେ ଯାହା ଭାବୁ ପଛେ ।"

ଶ୍ୱେତା ଆଗରୁ କହିଥିବା କଥା ପୁଣି ଦୋହରେଇଲା, "ସାତ ବରଷ ହେଲା ତ କାମ ଖଟିଲୁ । ଆଉ କେତେ କରିବୁ ? ଏଣିକି ବସ୍, ନାତି ନାତୁଣୀ ଧର ।"

# ଯମୁନାର ଅପା

ତାର ବାପା ମା ନଥିଲେ । ଭାଇଟିଏ ତାର ରେଙ୍ଗୁନରେ ରହୁଥିଲା । ଭାଉଜଲେଖା ଜାଣିକ ପାଖରେ ଯମୁନା ରହେ । ସୁନ୍ଦର ଝିଅ । ଭାଉଜ ଖୁବ୍ ଶ୍ରଦ୍ଧା ସ୍ନେହ କରନ୍ତି । ତାଙ୍କର ନଣନ୍ଦ ନ ଥାଏ । ଭାଇଙ୍କୁ ଯମୁନା ନିଜ ଭାଇଠୁ ଅଧିକ ସମ୍ମାନ କରେ । ଭାଉଜଙ୍କୁ ସବୁ କାମରେ ସାହାଯ୍ୟ କରେ । ରହୁ ରହୁ ଅତି ଆପଣାର ହୋଇ ରହିଲା । ବୟସ ବଢୁଥାଏ । ଭାଇଭାଉଜଙ୍କର ଚିନ୍ତା, କେଉଁଠି ଏଇଟିକୁ ବାହାଦେବେ । ଯମୁନାର ନିଜ ଭାଇକୁ କେତେ ଚିଠି ଲେଖି ଡାକୁଥାନ୍ତି ।

"ତୁ ଚାଲିଆ ରେଙ୍ଗୁନ ଦେଶରୁ । ଏଇଠି ତତେ କିଛି ହେଲେ କାମ ଜୁଟିଯିବ ।" ରେଙ୍ଗୁନରୁ କିଛି ଜବାବ ଆସେନା ।

ଦେଖୁ ଦେଖୁ ବେଳ ବହିଗଲା । ଭାଉଜଙ୍କର ଭାଇମାନେ ତାଙ୍କ ପାଖକୁ ଯା ଆସ କରୁଥାନ୍ତି । ଯମୁନାର କାମଦାମ ଦେଖୁଥାନ୍ତି । ସେମାନେ ବି ବହୁତ ଭଲ ପାଇଗଲେ ଯମୁନାକୁ । ହଠାତ୍ ଗୋଟିଏ ବର ଜୁଟିଗଲା ଯମୁନାପାଇଁ । ଭାଉଜଙ୍କର ବଡ଼ ଭଉଣୀ ଭାଇମାନଙ୍କୁ ଜଗର କରିଥାନ୍ତି, ନିଜ ସ୍ୱାମୀଙ୍କ ପାଇଁ ଆଉ ଗୋଟିଏ ସ୍ତ୍ରୀ ଖୋଜିଦବାକୁ । ସେ ପଚାଶ ଛପନ ବର୍ଷ ହେଲା ବାହା ହୋଇଥାନ୍ତି । ପିଲାଛୁଆ ଜନମ ହୋଇ ନଥାନ୍ତି । ଛୁଆ ପିଲା ଲାଗି ଝୁରି ଝୁରି ସେମାନଙ୍କର ଆୟୁଷ ସରିବାକୁ ବସିଲାଣି । ଯେତେ ଦିଅଁ ଦେବତା ପୂଜାପାର୍ବଣ କରୁଥାନ୍ତି ଦହେଁ ଯାକ, କିଛି ଫଳ ମିଳିଲା ନାହିଁ । ବାହା ହେଲା ବେଳକୁ କନ୍ୟାକୁ ପନ୍ଦର୍ବର୍ଷକୁ ବରକୁ ପଚାଶବର୍ଷ ହୋଇଥିଲା । କନ୍ୟା ଦେଖିବାକୁ ଅତି ସୁନ୍ଦରୀ । ଚମ୍ପାଫୁଲ୍ ରଙ୍ଗ । ମୋଟି ନୁହଁ କି ପତଳୀ ନୁହଁ । ବର କଳା । ଲୋକେ କୁଆଡ଼େ ଥଟ୍ଟା କରୁଥିଲେ—ରୂପା ଡାଟିଆକୁ ଜାମୁକୋଳି । ଯାହେଉ ବର ତ ଭଲ । ଘରେ ଭାଇଭଉଣୀ ଗୁଟେଟି । ଆରମ୍ଭରେ ସେମିତି ଧନସମ୍ପତ୍ତି ନଥିଲା । ବୋହୂ ଘରକୁ ଗଲାଠୁ ଘର ଉଜ୍ଜ୍ୱଳ ହେଲା । ଧନ ସମ୍ପତ୍ତି କେମିତି କେମିତି ମାଡ଼ିଗଲା । ସ୍ୱାମୀ ସ୍ତ୍ରୀକୁ ଅଷ୍ଟଅଳଙ୍କାର ମଣ୍ଡିଦେଲେ । ଏମିତି କେତେଦିନ ଚାଲିଗଲା । ନଣନ୍ଦ ଦହେଁ ବାହାହେଲେ । ତାଙ୍କର ପୁଅଝିଅ ହେଲେ । ଦିଅର ବାହାହେଲା । ତାର ପୁଅଝିଅ ହେଲେ । ଏ ଦହଙ୍କ ମନ ସବୁବେଳେ କଷ୍ଟ ହେଲା, ପୁଅଝିଅ ନ ହବାରୁ । ଶେଷରେ ସ୍ତ୍ରୀ ତାଙ୍କର ସ୍ଥିର କଲେ, "ନିଶ୍ଚେ ବାହାକରେଇବି ତାଙ୍କୁ ।" ଧନସମ୍ପତ୍ତି କିଛି ଅଭାବ ନାହିଁ ଘରେ । ଡୋଲି ଡୋଲି ଧାନ, ଚାଉଳ, ମୁଗ, ବିରି, ଗୁଡ଼, ଘିଅ ସବୁ । ସୁନ୍ଦର ବାଗର । ସ୍ୱାମୀଙ୍କୁ ବୁଝାଇବାକୁ ଲାଗିଲେ, "ତମେ ନିଶ୍ଚେ ବାହାହୁଅ ।"

"ନା ମା ! ଭଣଜା ଅଛି । ପୁତୁରା ଅଛି । କାହାକୁ ହେଲେ ପୁଅ କରିବା ।"

"ସେ କଥା କୁହନା । ତମଠୁ ପୁଅଝିଅ ହେବେ । ମୁଁ ତାଙ୍କୁ କୋଳରେ କାଖରେ ଧରିବି । ତେବେ ଯାଇଁ ମୋ ଆତ୍ମା ଶାନ୍ତି ପାଇବ ।"

ସ୍ୱାମୀ ଯେତେ ମନାକଲେ ମଧ୍ୟ ବସିଲାବେଳେ, ଶୋଇଲା ବେଳେ, ଖାଇବାବେଳେ ତାଙ୍କର ସେହି ଗୋଟିଏ କଥା । ସ୍ୱାମୀ କହନ୍ତି, "ପଚାଶ, ଏକାବନ ବର୍ଷ ହେଲାଣି । କାହାର କନ୍ୟା ଗୁଡ଼ାକ ଭେଲାଭେଲା ହଉଚନ୍ତି ଯେ ମତେ ଦେବ ? ଆମେ ଯେତେଦିନ ଅଛେ, ଭଲରେ ବଞ୍ଚିବା । ଆଉ କାହିଁକି ଯେମିତି ହଟହଟା ହବା ?"

"ନାହିଁ ନାଇଁ, ହଟହଟା କଅଣ ହବାମ ?"

ସେହି ଏକା ଜିଦ୍ ସ୍ତ୍ରୀଙ୍କର । ଭାଇମାନଙ୍କୁ କହିଲେ । ଭଉଣୀ, ଭଣୋଇ ବନ୍ଧୁବାନ୍ଧବ ସମସ୍ତିଙ୍କ ପାଖରେ ଲାଗିଲେ । "ସ୍ୱାମୀଙ୍କପାଇଁ ଆଉ ଗୋଟିଏ ଖୋଜିଦିଅ ।" ଭାଇମାନେ ଯମୁନାପାଇଁ ସାନଭଉଣୀକୁ ପ୍ରସ୍ତାବ ଦେଲେ । ବାହାଘର ହେଇଗଲା । ବୋହୂ ହେଇ ଆସିଲା ଯମୁନା । ତେଙ୍ଗା, କାଳୀ, ଧାବମୁହିଁ, ବାଉଁଶ କାଠିପରି ହାଡଗୋଡ଼ । ବରର ପ୍ରଥମ ସ୍ତ୍ରୀ ନିଜେ ଯାହା ଆସୁ ଅଳଙ୍କାର ପିନ୍ଧିଥିଲେ, ସବୁ ପିନ୍ଧେଇ ଦେଲେ ସଉତୁଣୀକୁ । ଭଲ ଭଲ ଶାଢ଼ି । ଲୁଗାପଟା । କାନରେ ନାକରେ ବେକରେ ହାତରେ ଗୋଡ଼ରେ ମୁଣ୍ଡରେ ଝଲ-ମଲକା ଅଳଙ୍କାର । ଯମୁନାର ଝିଅଟିଏ ହେଲା । ଝିଅଟିକୁ କୋଳେଇ କାଖେଇ ଅତି ଆନନ୍ଦ ହେଲେ । ଯମୁନା ତାଙ୍କୁ ଅପା ଅପା ଡାକେ । ଅପା ସଉତୁଣୀକୁ ସାନ-ଭଉଣୀ ନୁହଁ, ନିଜ ଝିଅପରି ଭଲପାଇଲେ ।

ମାତ୍ର ଅପା ସ୍ୱାମୀଙ୍କୁ ପାଖରେ ନ ପାଇ ଏକା ଏକା ଅନୁଭବ କଲେ । ପୁରୁଣା କଥାସବୁ ମନେ ପଡ଼ିଲା । ଲୁଚି ଲୁଚି କାନ୍ଦିଲେ । ମନକୁ ବାଧିବାରେ ଦେହ ଦୁର୍ବଳ ହେଲା । ଖାଇବାକୁ ରୁଚିଲା ନାହିଁ । ନିଜେତ ଜିଦ୍‌ଧରି ସ୍ୱାମୀଙ୍କୁ ବାହା-କରେଇଲେ । ସେତେବେଳେ କହୁଥିଲେ, "ଶେଷ ସମୟକୁ ତମ ହାତ ଗୋଡ଼କୁ କିଏ ନାହିଁ । ମୋ ସାନକୁହା ମାନ । ବାହାହୁଅ । ତମଠୁ ଯୋଉ ସନ୍ତାନ ଜନ୍ମହବ ତାକୁ ମୁଁ କୋଳରେ ଧରି ଶାନ୍ତିପାଇ ମରିବ । ମୁଁ ବେଶୀ ଦିନ ବଞ୍ଚିବି ନାହିଁ ।"

ପରେ ତାଙ୍କର ଏମିତି କଅଣ ହେଲା ? ସ୍ୱାମୀ ତାଙ୍କ ମନକଥା ବୁଝି-ପାରିଲେ । ତାଙ୍କ ପାଖରେ ବସୁଥିଲେ । ବୁଝାଉଥିଲେ, "ଦେଖ, ମୁଁ ଆଗରୁ କହୁଚ

ତମେ ସହିପାରିବ ନାହିଁ । ତମକୁ ବହୁତ ବାଧିବ । ତମେ ଜିଦ୍ ଧରିଲ । ମୁଁ ଭାବିଥିଲି, ଆମେ ଯେତେଦିନ ଥିବା ଦୁଃଖେ ସୁଖେ ବଞ୍ଚିବା । ତମର ଏ କଷ୍ଟ ମୁଁ ସହିବି କିମିତି । ଜ୍ୟୋତିଷ କହିଛନ୍ତି ତମଅନ୍ତେ ମୋର କିଛି ଧନସମ୍ପତ୍ତି ରହିବ ନାହିଁ । ତମଲାଗି ମୁଁ ସୁଖ ସମ୍ପଦ ପାଇଛି । ତମଅନ୍ତେ ମୁଁ ବାନପ୍ରସ୍ଥ କରେ କି ମରେ କି ବଞ୍ଚେ, ଏତେ ଭାବିବା ତମର ନଥିଲା । ତମଠୁ ଅଲଗା ରହି ମୁଁ କଅଣ ସୁଖ ପାଉଛି ?"

ସେ ସ୍ୱାମୀଙ୍କ ବୁଝାଇବାରେ ବୁଝୁଥାଆନ୍ତି । ପୁଣି ମନ କଅଣ ହୋଇଯାଉ-ଥାଏ । ଯମୁନାର ନୂଆ ସଂସାର । ସ୍ୱାମୀ, ଝିଅ, ଘର । ଅପାଙ୍କୁ ମାନିଥାଏ । ତାଙ୍କ ମନକଥା ଜାଣିପାରେ । ସେ ନାହିଁକି ଅସହଣି ହେଲେ ବୁଝେ । ଯମୁନା ଯାଇ ପାଖରେ ବସେ । ଘଷି ଆଉଁସି ଦିଏ । କଅଣ ଖାଇବେ, କଅଣ ଭଲ ଲାଗୁଚି, କଅଣ ଭଲ ଲାଗୁନି ପଚାରେ । ଅପା ହଠାତ୍ ଚିଡ଼ି ଉଠନ୍ତି. 'ଯା'ମ ଯା, ମତେ ସବୁ ଭଲ ଲାଗୁଚି । "ସେଇଠୁ ନରମି ଯାଆନ୍ତି, ତୁ ତାଙ୍କ କଥା ଭଲକରି ବୁଝ୍ । ଝିଅକୁ ମୋ ପାଖେ ଦେଇଯା । ମୁଁ ତ ଦେହକୁ ଦେହ ଦୁର୍ବଳ ହୋଇଯାଉଚି । ତୁ ମୋ ନାଁ ରଖ । ମୋ ଭାଇ ଭଉଣୀଙ୍କଠୁ ସମ୍ପର୍କ ତୁଟାଇବୁ ନାହିଁ । ତାଙ୍କୁସବୁ ନଜର କରିବୁ । ପୁଅ ହବ ନିଶ୍ଚେ । ସ୍ୱାଙ୍କର ନାଁ ରଖିବ । ଗୁଣବାନ ସାଧୁସନ୍ଥ ସ୍ୱାମୀ ମୁଁ ପାଇଥିଲି । ତାଙ୍କ ଆଗରେ ମୋ ଦିନ ସରିଗଲେ ଧନ୍ୟ ହେବି । ତୋ ଭାଗ୍ୟରେ ସେ ଜୁଟିଲେ । ତୁ କେତେ ତପସ୍ୟା କରିଥିଲୁ । ତାଙ୍କ ସେବା ଯତ୍ନରେ ହେଳା କରିବୁ ନାହିଁ । ମୋ ଗର୍ଭରୁ ସନ୍ତାନପାଇବା ମୋ ଭାଗ୍ୟରେ ନାହିଁ । ତୋ ଗର୍ଭରୁ ମୋର ସ୍ୱାମୀଙ୍କର ଝିଅଟିକୁ ଧରି ମୁଁ ସାର୍ଥକ ହେଲି ।"

ଯମୁନାର ଅପା କ୍ରମଶଃ ରୁଗ୍ଣା ହୋଇଗଲେ । ଖାଇବା ଛାଡ଼ିଦେଲେ । 'ଅନ୍ନ ବିହୁନେ ଧ୍ୱଂସହାନ ।' ସେ ଶଯ୍ୟାଶାୟୀ ହୋଇଗଲେ । କିଛିଦିନ ପରେ ତାଙ୍କ ଲୀଳା ଶେଷ ହୋଇଗଲା ।

# ମଣିଷ ହାର

ଶିବାନୀ ପଚାରୁଥିଲା ତା' ଅପା ରଜନୀକୁ, 'ଅପା ଜ୍ୱାଇଁ ଘର, ଜ୍ୱାଇଁ ବୋଉ କଥା କହୁନୁ' ।

"ହଁ ଜ୍ୱାଇଁ ବୋଉନା ! ସାଇ ପଡ଼ିଶାଙ୍କ ପାଚିଲା ଧାନ କାଟିଆଣି ଘରେ ପୂରେଇ ଦେବ । ଖରାରେ ଶୁଖାଇ ଜଗେ ଗୋଡ଼ରେ ମଳି ମଳି ଅମଳ କରିଦେବ । ବୈଶାଖ ମାସ ହୁଦୁହୁଦିଆ ଖରା ଝାଞ୍ଜି ପିଟୁଥିବ । ନଈରୁ ଜୋଡ଼ା ଜୋଡ଼ା ପାଣି ବୋହି ଆଣିବ । ସେଇ ନଈ ବାଲିରେ ତା' ଗୋଡ଼ କେମିତି ଫୋଟକା ହୋଇନଯାଏ କହିଲୁ ? ସ୍ୱେରଣୀ ଯେମିତି, ଓଲେଇ ସେମିତି । ତା' ଶାଶୁ ଆଉ ସ୍ୱାମୀତ ରସୁଣ୍‌ଟିଏ ପୋଡ଼ିଦେଇ, ତାକୁ ଲଗେଇ ଭାତ ଖାଇ ଦିଅନ୍ତି । ଫଲ ପରିବା କ'ଣ ତା ଘରେ ପଶେନା ! ଇଏ କ'ଣ କରେନା ଲିଆ ମୁଆଁ, ମୁଢ଼ି ମୁଆଁ, ଭୁଜିଚଣା, ଚକୁଳିଚଣା, ଆଖୁ ସବୁ କିଣିଥିବ । ତାକୁ ରାତିରେ ସବୁ ବସି ଖାଇବ । ପୁଅ ଝିଅଙ୍କୁ କ'ଣ ତା' ପାଖରେ ଶୁଆଇବ କି ? ସାନ ଝିଅକୁ ପାଖରେ ଶୁଆଇ ଥିବ । ସେତ କିଛି ଜାଣି ପାରିବ ନାହିଁ ।"

ଶିବାନୀ ହସି ହସି ଗଡ଼ିଯିବ, "କ'ଣ କହୁଚୁ ମଁ ଅପା" !

"ତୁ କିଛି ଜାଣିନୁ ? ତମ ପଡ଼ିଶା ଘର ପରା । ମାମାଁ ତ ସବୁ ଜାଣନ୍ତି, ମାମାଁ ପଚାରନ୍ତି ଜ୍ୱାଇଁ ବୋଉକୁ—କେମିତି ଏମିତି କାମ କରୁଚ ହେ ପିଲା ? ଜ୍ୱାଇଁ ବୋଉ କହେ, 'ନେଇ ଆଣି ଥୋଇ ଜାଣିଲେ ସ୍ୱେର ବଦ୍ୟା ଭଲ ।'

ସେ ମା ପୁଅ ତ ଜନ୍ଦା ଗାଣ୍ଡିରୁ ଗୁଡ଼ କାଢ଼ିବା ଲୋକ । ଚଣା ଖାଇ ହାତ ଗୁଣିବା ମଣିଷ । ଯାହା ଖାଇଥିବ ପେଟକୁ, ଯାହା ଦେଇଥିବ ବାଟକୁ । ଶିଖିଲ— ଖାଇଲ, ସେମାନେ ଯାହା ଖାଇବା କଥା ଖାଆନ୍ତୁ । ସ୍ୱଜନ ଆସିଲେ ତ ଆହୁରି । ଏତକୁ ଏତେ କରି ଲଗେଇ ଦେବ । ହେଲେ କେତେ ପାରିବାର ଲୋ ମାଁ' ।

ସ୍ୱଜନନାମୀ ଆସିଲେ ମଧ୍ୟ ସେଇ ରସୁଣ ପୋଡ଼ା ଭାତ ଆଉ ଚଣା ଶାଗ ଘାଣ୍ଟ । ତାଙ୍କି ଖାଲେ ନଣନ୍ଦ ଭାଉଜ ଧାନ କୁଟୁ କୁଟୁ ଭଲ କଥା ହଉ ହଉ ଖୁବ୍ ପାଟିଗୋଳ ଲାଗି ଯିବେ । ଶାଶୁ ତା'ର ଆହୁରି ପାଟି କରୁଥିବ । ଝିଅ ଆଡ଼କୁ କଣେଁ । ଝିଅ ପଟରେ ହିଁ ଥିବ । ଯେବେ ଜ୍ୱାଇଁ ବାପ ଆସି ଯାଇଥିବ ନା, ଗୋରୁ ଗାଈ ପରି ବାଡ଼େଇ ଯିବ ଜ୍ୱାଇଁ ବୋଉକୁ । ବାପଲୋ ମାଆଲୋ କହି ରଡ଼ି ଛାଡ଼ିବ । ଲୁହ ପୋଛି ଦେଇ ପୁଣି ଯୋଉଠାକୁ ସେଇଠା । ଯେତେ ମାଠୁକୁ ମାଠ ନା ମୁଁ ସେଇ ଦରପୋଡ଼ା କାଠ । ଥରେ ପରା ଆମେ ବାର

ପିଣ୍ଡାରେ ହଳଦୀ ଲଗାଉଥିଲୁ, କୁନ୍ଦିଆ ବୋଉ ଆସିଗଲା, 'ଏ, ଶିବାନୀ ଏ ରଞ୍ଜନ; ହଳଦୀ ଲଗାଉଛ ! ଆଉ ମୁଁ ଅନେଇଲେ ଦୃଷ୍ଟି ଯାଉଛି ? ଅଲୋ ଏ ! ବାର ବରଷି ପଣେ ଝିଅ''—ଏମିତି କହି ସେ ହସି ହସି ଗଡ଼ିଗଲା । ଆମକୁ ଲାଜ ଲାଗିଲା ।

ଶିବାନୀ ହସି ହସି କହେ, ''ସେ ସମ୍ପର୍କରେ ଭାଉଜ ଲାଗେ ଆମର । ଆମକୁ ଥଟ୍ଟା କରେ ।''

''ମଇନା କଥା କ'ଣ ସେ ଅପା ?''

''ମଇନାକୁ ଭାଉଜ ଏତେ ଭଲ ପାଉଥିଲା । ପୁଣ୍ଣିମାସୀ ତା' ଝିଅକୁ କେତେ ଭଲ ପାଉଥିଲା । ମଇନାକୁ କାନ୍ଧରେ ବସାଇଥିବ । କୁନିଆକୁ ଧରି ବୁଲଉ ଥିବ । ଦେଖିଲୁ ମଇନା—ଭାରିଯା ଇନ୍ଦୁ । ବାର କି ତେର ବରଷର ଝିଅଟିଏ ବା । ସେ ପୁଅଣି ହୋଇ ଆସିଲା । ଆଗ ଆଗ କୁନିଆ ବୋଉ ଝିଅଠୁ ଅଧିକ ଭଲ ପାଉଥିଲା । ମଇନା ଭାରିଯା ଥରେ ମାଣ୍ଡିଆ ଯାଉ କରସାଗ ହାଣ୍ଡି ଚୂଲିରୁ ଓହ୍ଲାଉଚି ଅଣ୍ଟୁକୁ ସବୁ ଢାଳିଗଲା । ଅଣ୍ଟୁକୁ ତଳକୁ ଉହୁ ଉହୁ ଫୁଟୁଛି—'ମଣଗଲିଲେ ନାନୀ' କହିକି ବିକଳ ହୋଇ କାନ୍ଦୁଥାଏ । ସବୁ ସେବା କରିଥିଲା ସେତେବେଳେ କୁନିଆ ବୋଉ । ବଡ଼ ରକ୍ଷଣୀଟି ଇନ୍ଦୁ । ଭଲ କରି ପେଟକୁ ଖାଇବ ନାହିଁ । କୁନିଆ ବୋଉ ଗାଳି କରି ଭଲକରି ବାଢ଼ିଦେବ ।

ଇନ୍ଦୁ ପୋଡ଼ି ହୋଇଥିଲା ବେଳେ ବଡ଼ ବଡ଼ ଫୋଟକା ସବୁ ଉଠିଥାଏ । ଦେଖିଲେ ଡର ଲାଗେ । ତା' ମା ତା' ଲାଗି କ'ଣ ଔଷଧ କଲେ ତୁ ଜାଣୁ ? ଆମ୍ବ, ଲହୁଣୀ, ଫଳା ସିନ୍ଦୁର । ଏସବୁ ଏକାଠି କରି ଗୋଟେ ବଡ଼ ପିତଳ ଗିନ୍ନାଆ ଥାଳିରେ ରଖିଲେ । ଗୋଟେ ପିତଳ ଥାଳ ଭଲ କରି ମାଜି ଦେଇ ତା'ର ଉପରେ ରଖି ଘୋଟିଲେ । ଘୋଟିସାରି ଗୋଟେ ପଙ୍ଖା ହାତ ତଳାରେ ରଖି ତାକୁ ନେଇ ଦେଲେ ଓ ପାଗ ପରରେ ତାକୁ ଲଗେଇବାକୁ କହିଲେ । କୁନିଆ ବୋଉ ତା'କୁ ଦିଓଳି ଲଗେଇ ଦିଏ । ସେ ଦିନୁ ଭଲ ହେଲା । ଆଉ ଗନ୍ଧିଆ ଘା' ହେଲନାହିଁ ଘା' ଶୁଖି ଆସିଲା । କେତେ ଭଲ ଦ ଯା' ଯାକ ଚାଲିଲେ ।''

''କେତେ ଦିନ ପରେ ବଡ଼ଗ୍ର ମଇନାର ପୁଅଟିଏ ହେଲା । ସେ ମଲା । ଇନ୍ଦୁ ମଲା । ମଇନା ବି ଶେଷରେ ମଲା । ଆଉ ତା'ର ଏବେ କିଛି ନାହିଁ । ଜମି ବାଡ଼ି ତା'ର ଇଏ ମାଡ଼ି ବସିଲା । ଘର ଖଣ୍ଡିକ ତା'ର କେନା, ଘରକୁ ବିକ ଦେଇ କାଟେ କୋଠାଘର କଲା । କୁନିଆ ବୋଉର ଦାନ୍ତ ରଢ଼ିରେ ମଇନାର ସବୁ ଶେଷ ହୋଇ-ଗଲା । 'ମଣିଷ ହାରି ଗଛର ଗୁଡ଼ି ଯେତେ ଗଲେ ତେଣେ ଉଧଇ ନାହିଁ' ।''

# ଆହୁର ମଧୁର

ଆଷାଢ଼ ମାସ । ଘୋର ବର୍ଷା । ନୀଳମାର ବାଡ଼ାଘର । ସାନଭଉଣୀ ନଳିନୀ ଫୁଲ ଗୁନ୍ଥିବାକୁ ବସିଛି । ଅଗଣାରେ ବହୁତ ଫୁଲ ଫୁଟିଛି । ଅଁଳେଇ ଫୁଲ । ବାସନା ନ ଥିଲେ ବି ସୁନ୍ଦର କେଶର ରଙ୍ଗ । ରଘୁବୀରଙ୍କ ସହିତ ଜାନକୀ ବନବାସିନୀ ଥିଲେ । ବଣରୁ ତୋଳିଆଣି ଏଇ ଫୁଲ ଜୁଡ଼ାରେ ପିନ୍ଧୁଥିଲେ । ସେଇ ଫୁଲ ହଳଦିଆ, ନୀଳ ମଧ୍ୟ ଅଛି । ହଳଦିଆଟା ଭଲ ଲାଗେ । ନୀଳ ଏତେ ମନୋହର ନୁହେଁ । ବେଣୀକୁ ଦୁଇରେଇ ଫୁଲଗୁଡ଼ିକ ବେଣୀର ତିନି ଭାଗରେ ଫୁଟିଛି । ଯବା ସାନଭଉଣୀ ମାଧୁରୀ ଫୁଲ ତୋଳି ଲାଗିଛି । ଛଅ ବର୍ଷର ଝିଅ । ଉଦ୍‌ବସ୍ତ୍ର ଲଙ୍ଗଳା । ବାଳ ବାନ୍ଧିଛି । ଗୋଲାପୀ ଛିଟ୍‌ର ଫୁଲଛନ୍ଦା ବେଣୀଟି ପିଠିକି ଝୁଲୁଛି । ଗୁଡ଼ାଏ ଫୁଲ ତୋଳି ସାରି ମାଧୁରୀ ନଳିନୀ ପାଖରେ ଦେଇ ପଚାରିଲା,

"ଅପା ! ଏତିକି ?"

"ଆଉ ତୋଳି ଆଣେ ମ । ଅଣ୍ଟିବ ନାହିଁ ।"

ମାଧୁରୀ ଆହୁରି ଫୁଲ ଆଣିବାକୁ ଗଲା ।

ନଳିନୀ ସୁନ୍ଦର ଫୁଲହାର ଦୁଇଟି ଗୁନ୍ଥିଲା । ଗୋଟିଏ ତା ଅପାର । ଆଉ ଗୋଟିଏ ଅପା ବରର । ଫୁଲ ଗୁଡ଼ିକ ତିନିଦିନ ଯାଏ ମଉଳେ ନାହିଁ । ହାଲୁକା ମଧ୍ୟ ଲାଗେ । ନ ହେଲେ କ'ଣ ଜନକ ନନ୍ଦିନୀଙ୍କର ଏତେ ପ୍ରିୟ ହୋଇଥାଆନ୍ତା ?

ବର ବେଦୀକୁ ଆସିଲାବେଳକୁ ଫୁଲ ମାଳଟି ମକୁଟ ସାମନାରେ ବନ୍ଧା-ହୋଇଥିଲା । ମୁଗୁନିପଥର ରଙ୍ଗର ବରକୁ ଫୁଲମାଳଟା ଝଟକୁଥାଏ । ନଳିନୀ ତା ଭଉଣୀକୁ ଦେଖୁଥାଏ, ନିଜଗୁନ୍ଥା ଫୁଲମାଳଟି କେମିତି ମାନୁଛି । ନୀଳମାର ଥିଲା କେତକୀ ଫୁଲର ରଙ୍ଗ । ମୋଟାମୋଟି ଚେକାଚେକ ଝିଅଟି । ବରକୁ ଦେଖି କିଏ ଜଣେ ଟିପ୍ପଣୀ କଲା ।

"ଆହାରେ ! କି ଜୁଆଇଁ !"

ଆଉ ଜଣେ ଜବାବରେ କହିଲା,

"ରାଧା-ମାଧବ !

ନୀଳମାକୁ ସଜ କରିଦେଲେ । ଖାଣ୍ଟିସୁନାର ଅଳଙ୍କାର—ମୁଣ୍ଡରେ, ମଥାରେ, ବେକରେ, କାନରେ ଭଲ ଜୁଡ଼ା ବାନ୍ଧି ଜାଣନ୍ତି ଖୁଡ଼ୀ । ସେଇ ଜୁଡ଼ାରେ

ପିନ୍ଧାଇ ଦେଲେ ଅଁଳେଇ ଫୁଲର  ଗଜରା ହାର । ଦେଖଣାହାରୀଏ ଠେଲା ପେଲି ପଶି ଆସୁଥାଆନ୍ତି, ଦେଖିବାକୁ ।

ବାହାଘର ସରିଲା । ତା  ପରଦିନ ନୀଳିମା କାନ୍ଦି କାନ୍ଦି ବିଦାୟ ନେଉ-ଥାଏ । ଶଙ୍ଖର ଗହ ଗହ ନାଦ । ଝୁଣ୍ଟୁ ଆଙ୍କୁ ବିଶ୍ରାମ ନାହିଁ । ଅନବରତ ଶଙ୍ଖ ଫୁଙ୍କି ଚାଲିଛି । ହୁଳହୁଳିର ଦୁଃଖ ନାହିଁ । କାନ୍ଦ ବୋବା ପଡ଼ିଯାଇଛି । ଦୁଇପାଖେ ଦୁଇଟି ଶାଢ଼ି ବାଡ଼ । ଏପାଖ ସେପାଖ ଚାରିଜଣ ଧରିଛନ୍ତି । ବରକନ୍ୟାଙ୍କୁ ବିଦାୟ ଦଉଛନ୍ତି-ବୋଉ, ଖୁଡ଼ୀ, ଜେଜେ ମା, ବଡ଼ ଭଉଣୀ ଆଉ ସାନ ଗାଇ ଭଉଣୀମାନେ । ସାଇ ପଡ଼ିଶା ସବୁରି ଆଖି  ଲୁହରେ ଭରା । କିଏ କହୁଛି—"ଏ କି ବରଲୋ ମା' ! ରୂପା ଛାଟିଆରେ କାମୁକୋଳି ।" କିଏ  ତାକୁ ଆକଟ  କରୁଛି,  "ଛିଃଲୋ ! ସାଆନ୍ତେ ଶୁଣିବେ" । ନଳିନୀ  ଦେଖୁଛି, ଶୁଣୁଛି । ନୀଳିମା କ'ଣ ଝୁରି ମରିଲା କିଛି  ଏତେ କଳା ବର ପାଇଁ ?

ତିନି ବରଷ  ପରେ ଆସିଲା । ଦୁଇଟି  ପୁଅର ମାଆ । ଜେଜେମା, ତା'ର ଜେଜେ ଅଣ୍ଟା ଚାମଚା କରିଥିଲେ । ସେ ତା ବରର ଗୁଣ ଗାଉଥିଲା—

"ମା'-ମ ଗୁଣ ସୁନ୍ଦର । ରୂପରୁ କଅଣ ପାଇବ ? ରୂପଗୁଣ ସବୁ  ସୁନ୍ଦର । କଳାତ ମୋ ଦେହରେ କିଛି ଲଗି ଯାଇନାହିଁ ।"

ମା' ହସିଥିଲେ,

"ସତରେ, ତୋ  କାଳିଆ ଲାଗି ତୋ ଜେଜେ ଆଗୁରୁ ମଧୁରା ଦେଇଛି !"

# ଶଙ୍ଖିଆ ଆଇଲା ଲୋ, ମଗ୍ରୀ ଆଇଲା !

"ଶଙ୍ଖିଆ ଆଇଲାଲୋ ମା ! ମଗ୍ରୀ ଆଇଲାଣି, ବେଗ କର ଖାଇ ଦେଲୋ । ଅଖାରେ ପୁରାଇ ନେଇଯିବେ । ଅନ୍ଧାର ଘୁଡ଼୍‌ଘୁଡ଼ ମାଡ଼ି ଆସିଲାଣି" !

ମିଟିକ ଜୁଳୁଜୁଳୁ କଣ ଅନାଇଁ ଦିଏ, ଭାତ ଗୁଣ୍ଡାଟି ପାଟିରେ ଧରି ପଚାରେ,

"କାହିଁ ମଗ୍ରୀ ? ଶଙ୍ଖିଆ କୋଉଠି ଅଛୁ ?"

'ନ ଖାଇଲେ ଆସିବ ପରା ! ହେଇ, ଦାଣ୍ଡପିଣ୍ଡାରେ ବସିଛୁ ।'

"ବୋଉ ପାଖକୁ ଯିବ ।"

"ବୋଉ ପରା ଭାଇକୁ ଶୁଆଉଛୁ । ଭାଇକୁ ଛାଡ଼ିଆସିଲେ ଶଙ୍ଖିଆ ନେଇଯିବ ."

"ନାହିଁ ।"

"ହଁ, ନାହିଁ କ'ଣ ? ତୁ ଖାଇଦେ ।"

ମିଟିକ ଜେଜେମା କୋଳକୁ ଲେପଟି ଯାଏ . ଶଙ୍ଖିଆ ଅଛୁ କହୁ ଆଖି ବୁଜି ପକାଏ ।

"ମା', ଗୀତ ଗାଅ ।"

"ଯମୁନା କୂଳେ କଦମ୍ବ ମୂଳେ
କେ ବଜାଏ ବଂଶୀ ଧୀରେ
ରାଧା ରାଧା ସ୍ୱରେ ।

ସେତ ଚିକଣ କାଳିଆ ସେତ ଚିକଣ କାଳିଆ ··ଆ···ଆ···

ଧୀରେ ଧୀରେ ମିଟିକ ଆଖି· ବୁଜି ପକାଏ । ନିଦ ଆସିଯାଏ । ମାଟି ତେଲ ଦୀପଟି ମିଳିମିଳି ଜଳୁଥାଏ । ରାତିରେ ଢ' ଅର ବିଳିବିକେଇଲା ! ମା' ମା' କହୁ ଚମକି ପଡ଼ିଲା !

"ଶଙ୍ଖିଆ ଆସିଛୁ କି ? ମଗ୍ରୀ ଆସିଛୁ ?"

"ନାହିଁଲୋ ମୋ ମିଟିକ ।"

"ଭୁନୁକୁ ନେଇଗଲେକି ? ମା'ଲୋ ବୋଉ କାହିଁ" ?

"ବୋଉ ଅଛି । ବାପା ଅଛି । ଭୁଲୁ ଶୋଇଛି ବୋଉ କୋଳରେ ।"

"ଆଉ ଶଙ୍ଖିଆ ? ଦାଣ୍ଡ ପିଣ୍ଡାରେ ବସିଛି କହୁଥିଲୁ ।"

"ନାଇଁଲୋ । ମିଛ କହିଦେଲିଲୋ । ତୁ ଭାତ ଖାଇ ଢୁଳୁଥିଲୁ, ସେଇଥିଲାଗି । ରାତି ପାହିଗଲେ, ଦାଣ୍ଡପିଣ୍ଡାକୁ ଯାଇ ଦେଖିବା । ମରାଠୀ ଶଙ୍ଖିଆ କେହି ନାହାନ୍ତି ।"

ମିଟିକି ବଡ଼ହେଲା । ପାଠ ପଢ଼ିଲା । ମରାଠୀମାନେ ଓଡ଼ିଶା ଆକ୍ରମଣ କରିଥିବା କଥା ଜାଣିଲା । ମରାଠୀବର୍ଗୀଙ୍କୁ ଓଡ଼ିଆଣୀ ସ୍ତ୍ରୀ ଲୋକମାନେ ଡରୁଥିବେ । ଠଗୀମାନେ ରୁମାଲ ଫାସରେ ଟଣ୍ଟିଚିପି ଡକାୟତି କରୁଥିଲେ । ସେଇଥିରୁ ଶଙ୍ଖିଆ ଗିଏ କଳାକନା ପକେଇ ମାଡ଼ିବସି ଟଣ୍ଟି ଚିପି ମାରିଦିଏ ।

ସଞ୍ଜରେ ମିଟିକି ନ ଖାଇ ପାରିଲେ ଶୋଇ ପଡ଼ିବ । ରାତିରେ କାନ୍ଦିବ । ଜେଜେମା ତାର କେମିତି ବଣପୋଡ଼ି ଦେଖାଇ ଭାତ ଖୁଆଇଦିଏ, ରାତିରେ ଶୋଇବା ଆଗରୁ ମରାଠା ଶଙ୍ଖିଆ କଥା କୁହେ, ସବୁ ମନେ ପଡ଼ିଯାଏ । ମା' ତାର କେତେ କାମ କରିଯାଏ ସକାଳୁ ଉଠିଲା ବେଳୁ ସଞ୍ଜଯାଏ । ଅଗଣା ଓଳାଏ । ଗୁହାଳ ପୋଛେ । ଗାଇ ଦୁହାଁ ପାଖରେ ଠିଆ ହୁଏ । ନାତି ନାତୁଣୀମାନଙ୍କୁ ଗାଧୁଆଏ, ଖୁଆଏ, ଜାମାଜୋଡ଼ା କରି ସ୍କୁଲ ପଠାଏ । ସଞ୍ଜବେଳେ ସଞ୍ଜବତି ଚଉରାମୂଳେ ଦିଏ । ମାଟି ତେଲଦୀପ, ଲଣ୍ଠନ ଲଗାଏ । ଗାଇଗୋରୁ ହଳଆକୁ ଧରି ବାନ୍ଧେ ।

ଖରାବେଳେ ଚଉରା ଲିପାପୋଛା କରି କାର୍ତ୍ତିକ ମାସରେ ଖୋଟି ଦିଏ । ବର୍ଷା ଦିନରେ କାକୁଡ଼ି ନୁଆକରି ଉଠିଲା ବେଳକୁ, ବାଉଁଶର ଗଜା ଗୁଣ୍ଡେ ଲମ୍ବ ହବ, ବେଶ୍ ନରମ, ତାକୁ ଖରାବେଳ ଯାକ ଦାଆ ଧରି ଚୂନା ଚୂନା କରି କାଟେ । ନଡ଼ିଆ ଗୁଡ଼ାଟି କୁଟେଇ ହେଇ ଆସିଥାଏ । ପାଟିରେ ଗୋଟିଏ ହେଲେ ଦାନ୍ତ ନ ଥାଏ । ବାଳଗୁଡ଼ିକ ଖୋଟ ଭଳି । ଭାଦ୍ରବ ମାସ ଆସିଲେ ଖଇ ଭାଜିବ, ଗଣି ଲଡ଼ୁ କରିବ ଗଣେଶଙ୍କ ପାଇଁ ।

ଏଇମିତିଆ ଦିନସାରା କାମ ପରେ ମିଟିକି ଶୋଇବା ପୂର୍ବରୁ ଚଞ୍ଚଳ ଟିକିଏ ଖାଇଦେଲେ ଜେଜେ ମା' ଟିକେ ନିଶ୍ୱାସ ମାରେ । ମିଟିକି ଅଝଟ ହେଲେ କି ଗପ ଲଗେଇ ଫଟେଇଲ ହେଲେ, ଜେଜେମା ଧୈର୍ଯ୍ୟ ହରାଏ । ମରାଠୀ, ଶଙ୍ଖିଆ, ଅନ୍ଧାର ଘୁଡ଼ଘୁଡ଼ି କହି ଡରାଏ । ଖରାଦିନେ ମା' ବଣପୋଡ଼ି ଦେଖେଇ

ମିଟିକକୁ ଭାତ, ଡାଲି ଗୋଳେଇ ଶୁଖୁଆଟିଏ ଚଟେଇ ଦଉଥିବ, ମିଟିକର ଆଖି-ପତା ପଡ଼ି ଆସୁଥିବ ।

"ହେଇଟେଲ ମିଛ ଦେଖିଲୁଣି ? ମାଙ୍କଡ଼ ଭୋଜି ।"

ମିଟିକି ଅନେଇ ଦବ । ପଚ୍ଛରିବ,

"କଅଣ ରାନ୍ଧୁଛ ମାଙ୍କଡ଼ ?"

"ଭାତ ରାନ୍ଧୁଛୁ । ଡାଲି ରାନ୍ଧୁଛୁ । ଶୁଖୁଆ ପୋଡ଼ୁଛୁ । ମାଉଁସ ପୋଡ଼ୁଛୁ ।"

"ଆମକୁ ମାଙ୍କଡ଼ ଖାଇବାକୁ ଦବ ?"

"ହଁ, ଆମେ ମାଙ୍କଡ଼ ଭୋଜି ଖାଇବାକୁ ଯିବା, ମାଙ୍କଡ଼ ଅଜା ତୋର ନିମନ୍ତ୍ରଣ ଦେଲେ ।"

"ମାଙ୍କଡ଼ ଅଜା ନାଇଁମ । ମାଙ୍କଡ଼ ।"

"ଅଜା ନାହିଁ ଆଉ କଅଣ ?"

"ମଗ୍ଠୀ ଆସିବ ନାହିଁ ?"

ଆଉ ମଗ୍ଠୀ ଶଙ୍ଖିଆ ଆସିବେ ନାହିଁ ।

"ଊ ଖାଇଦେ । ସୁନା ଝିଅ ହେଇଯିବୁ ।"

"କୁନୁ ଖାଇବ ।"

"ସେ ଖିର ପିଉଛୁ । ସେ କ'ଣ ଭାତ ଖାଇଲାଣି ? ତା'ର ପାଟିରେ ଦାନ୍ତ ନାହିଁ ।"

"ତା'ର ଦାନ୍ତ ନାହିଁ ? ସେ ପାକୁଆ ପାଟି ? ତା ଦାନ୍ତ କିଏ ଭାଙ୍ଗି-ଦେଲା ?"

"ଦେଖ୍, ସେମିତି ହେଲେ ଅନ୍ଧାର ଘୁଡ଼ୁଘୁଡ଼ିକୁ ଡାକିବ ।"

"ପାଣି ପିଇବି । ପାଣି । ଶୋଷ ହଉଛୁ ।"

× × × ×

ମିଟିକ ବାହାହେଲା । ତା' ବର ବମ୍ବେରେ ଜାହାଜ କର୍ମଶୁଖା । ଗ୍ରେଟ ଘରଟିଏ ଉଡ଼ାନେଇ ବନ୍ଧେଲା । ତା' ବର ଜାହାଜରେ ଯାଏ । ମିଟିକ ଏକୁଟିଆ ହେଇଯାଏ । ଜନକର ଘରରେ ମିଟିକ ଶୋଇଛୁ । ମିଟିକର ନିଦ ଭାଙ୍ଗିଗଲା । ଆରେ କିଏ ଇଏ ? ତା ବର ତ ଆସୁଣ ଫେରନାହିଁ । ଜୋର୍‌ରେ ଚମକି ପଡ଼ିଲା । ମଗ୍ଠୀ ଶଙ୍ଖିଆ ବୋଲି ପାଟିକରି ହାଉଲି ଖାଇଲା । ତା'ର ଗର୍ଭପାତ ହେଇଗଲା ।

# ଚକୀ

ଶୀତ ଗଲାଣି । ବସନ୍ତ ଆସିଲାଣି । ଏମିତି ଶୀତ ଯାଇ ବସନ୍ତ ଆସେ । କୋଇଲି କୁହୁକୁହୁ ଗାଇଲା ଶୁଣି ସତାଅଶୀ ଅଠାଅଶୀ ବର୍ଷର ବୁଢ଼ୀଟି ଡାକନ୍ତି ନାତୁଣୀ ବୋହୂକୁ,

—ଏ ଛୁଆବୋଉ, ଛୁଆବୋଉ ମ ! ଶୁଣୁଛ ନା କୋଇଲି କିମିତି ଗୀତ ଗାଉଛି । ମୁଁ ଆସନ୍ତା ଜନମରେ କୋଇଲି ହୁଅନ୍ତି, କୋଇଲି ଜନମ ପାଆନ୍ତି କି !

ଆହା ! କି ସୁନ୍ଦର ତା ଗୀତ ।

ଉଦାସ ମନରେ ଛୁଆବୋଉ ଅନ୍ୟ କିଛି ଭାବୁ ଭାବୁ ବୁଢ଼ୀଙ୍କ କଥାଟି ମନକୁ ଧକ୍କା ଦିଏ । ହସି ହସି ନନ୍ଦେଇଟି କହେ,

—ନୂଆବୋଉ, ନୂଆବୋଉ ମ ! ଭାଇ ଆସିବେ ଯେ । ଚିଠି ଲେଖିଛନ୍ତି ପରା ? ବସନ୍ତ ଚଢ଼େଇ ବୋବାଇଲାଣି । କଅଣ ମ ! କିଛି କହୁନ ଯେ !

ହଲାଇ ଦିଏ । ଖଟଣାରେ ରହୁଥାଏ ବୁଢ଼ୀଙ୍କ ଛୁଆବୋଉ । ସେମିତି ଚୁପଚାପ୍ । ଟିକୁନ ଶୋଇଛି । ଉଠିଲେ କ'ଣ ଖାଇବ ? କିଛି ତ ଖାଏନି । କେତେ ଯେ କାମ ସକାଳୁ ସଞ୍ଜ ଯାଏ, ସଞ୍ଜରୁ ରାତି ବାରଟା ଯାଏ ।

ମଝିରେ ମଝିରେ ନଣନ୍ଦ ସାନ୍ଦଜଙ୍କ ଖୁସି ଗପ । ବୁଢ଼ୀ ଟିକେ ନିଦ୍ରାଯା'ନ୍ତି । ଛୁଆବୋଉର ଡର ଘର ବୁଢ଼ୀଙ୍କ । କେତେବେଳେ ସେ ଚାଲିଯିବେ !

—ଏ ମା, ଏ ମା !

କରମ ଗଳାରେ କହଁ ଲେଇ ଡାକେ ।

—କଅଣ କଲେ ଆଲୋ ମା । କାହିଁକି ଇମିତି ମା ମା ହଉଚୁ ? ପୁଅକୁ କ'ଣ ଦି'ଟା ଖୁଆଇ ଦେ ।

ସଞ୍ଜ ହେଇଯିବ । ଛୁଆବୋଉ ଟିକୁନ ଲାଗି ଖାଇବାକୁ ଧରି ବୁଲୁଥିବ, ଖୁଆଇ ନ ପାରେ । କଳା ମଚମଚ ଆକୁଳୁ ଆକୁଳୁ ହଳଆଖି ଗାଲ ଉପରକୁ ମୋଟା ବଡ଼ ବାଉଁଶଟାଏ ରଖି ଦେଇଥିବ । ନିଦରୁ ଉଠି ଅନେଇଥିବ ଟିକୁନ । 'ହେଇଟିରେ, ମାଗୁଣିଆ ଆଇଲାରେ' କହୁ, ଡ଼ରିଯାଇ ଠକ ଠକ କରି ଦି'ଢୋକ ପିଇଯିବ ।

—ଆରେ ଖାଉବୁ ନା ଦେଖିଥା, କହୁ, ମାଗୁଣିଅ ଷ୍କଳ ଉପରକୁ ବାଉଁଶ-ଟାରେ ପିଟିଦବ ।

— ଥାଉରେ ମାଗୁଣି, ପୁଅ ଖାଇଲଣିରେ ! କହୁଲ ବେଲକୁ ପୁଅର ଝିଅ। କାମଟି ଧରିଯିବ । ଛୁଆବୋଉ ପୁଣି ଗ୍ଲେ । ବୁଢ଼ୀଙ୍କର କାମ । କଅଣ କହୁଚନ୍ତି ଶୁଣିବାକୁ ଯାଇ ଗ୍ଲେଲ୍ ଘର କାମକୁ । ବୁଢ଼ୀ ଯେ କେତେବେଳେ କାହା ଉପରେ ପ୍ରସନ୍ନ ! କେତେବେଳେ ନିଜେ ନିଜେ ଗପ କରି ବସିଲେଣି ।

—ଆଲେ ଏ ଛୁଆବୋଉ ! ହଁ, ମୁଁ ମୋର ଛୁଆବୋଉ ଡାକବ । କେତେ-ଜଣ ଥା'ନ୍ତି, ପୁଅ ଝିଅ ନାଁ ନେଇ ଡାକନ୍ତି । ମୋର ସାନବୋଉ, ବଡ଼ ବୋଉ । ନାତୁଣୀ ବୋଉକୁ ସେଠି ତାଙ୍କୁ (ସାନ ପୁଅଙ୍କ ଘରେ, ପାଖରେ ଆଉ ଏକ ଗାଁରେ, ନାତୁଣୀବୋଉକୁ) ଡାକେ ଛୁଆ । ଏଠି ୟାଙ୍କୁ ଡାକବ ଛୁଆବୋଉ ।

ନାତୁଣୀ ମୋର କଅଣ କରୁଚ କେଜାଣି ! ଡାଲି ବସେଇଲଣି ନା ? ପଶ୍ବରଦେଇ କହୁ ଉଠିବେ— ଡାଲି ବସେଇ ଘୋରେଇ ଦେ । ଭଲ କରି ଡାଲି ସିଝୁ, ତେବେ ଡଙ୍କା ପକାଇ ଘୋଟିବୁ ।

ମୋର ସେ ଫେଷାଡାଲି ଭଲ । ଡାଲି ହାଣ୍ଡିରେ କୋଳଥକୁ ଭାଜିଦେବ । ଚକଟରେ ଫେଷିବ । ଆମ୍ବ ପକାଇ ବନ୍ଧଦେବ ଯେ ନ ଖାଇଲା ଲୋକ ଖାଇବ । ଗଣ୍ଡାଏ ଭାତ, ସେଇଥିରୁ ଅଧକଂସା ଖାଇଲେ ମନବୋଧ । ୟାଙ୍କୁ କ'ଣ କରି ଆସେ ? ଛୁଆଲୋ ! ଏତକବେଳେ ପୋଷା କୁକୁରଟା ବୁଢୀଙ୍କ ପାଖକୁ ଗ୍ଲଲଯାଏ । ବୁଢ଼ୀ କହୁ ଉଠନ୍ତି,

—କୁକୁରଟା ମୋ ପଛରେ ପଛରେ ଲାଗିଚ କାହିଁକି ମ ? ଆରେ ଏ ! ମୋ ପାଖକୁ ଆସି କଅଣ ପାଇବୁ ? ଯା, ମୋ ନାତୁଣୀ ପାଖକୁ ଯା ।

ପୁଣି ପୁରୁଣା କଥାକୁ ଫେରିଯାଇ ବୁଢ଼ୀ କହୁ ଗ୍ଲଲନ୍ତି,

—ୟାଙ୍କ ରନ୍ଧଣା ମୋର ଅନେଇଚ ! ଯାହା ଖାଇଡ, ଦାନ୍ତମୂଳରୁ ଖୋଳିଲେ ଏଇନା ଯାହା ବାହାରବ, ପ.ଇବେ କୋଉଠୁ ଏଗୁଡ଼ା ? ଏ ଛୁଅ:ବୋଉ, ଟିକଏ ଶୁଣିଗଲୁ ।

ଛୁଆବୋଉ ଡାକ ଶୁଣି ପାଖକୁ ଆସିବ । ବୁଢ଼ୀ କହିବେ, କେତେଥର ଶୁଣେଇଥିବା ସେଇ କଥା ।

—ମୋ ମା' କ'ଣ କହିବ ନା, ଗଲୁ ଲୋ ମା', ସେ କୋଠି ତଳକୁ ଝିଙ୍କଏ ଗଲୁ । ଆମ କୋଠି ତଳେ ଭୁଆଁଟା ବୁଲି ବେଇଥିବ । ମୁଁ ଯିବି । ବୋଲି ପୁଅ କାଢ଼ି କୋଠି ତଳ ଜଗି ଦେବ । ମା ଛେନା, କନ୍ଦ, ଚୂଡ଼ା ଚକଟି କଂସାଏ ବଢ଼େଇଦବ । ପେଟେ ଖାଇବ । ଛେନା ତ ଅଧକଂସା ଦେଇଥିବ । ସାଙ୍ଗକୁ ଏଣ୍ଡୁଲାମାଛ ଭଜା । ଆଲୋ ଏ କୁଆବୋଉ, ମୋ କଥା ଶୁଣୁଚୁନା ? ତୋ ଗୋସେଇଁ ଶ୍ୱଶୁର ମତେ ଦେଖି କରି ବଡ଼ ହୋଇଥିଲେ । ମୁଁ ପଖ ନଈରେ ପହଁରୁଥିଲି । ବରୂଷା ନଈ । ଅବଧାନ କରି ଯାଉଥିଲେ । ସେ ବାଟରେ । ଦେଖିଲେ । ବୁଝିଲେ ପରା । ମୁଁ ତାଙ୍କୁ ବାହା ହେବି । ହେଲେ, ବଡ଼ ସୁନ୍ଦର ମଣିଷ ଥିଲି ସେ ମୋର । ଗୁଣ୍ଡ ବ ଳୁଆ ନ ଥିଲି ।

ସେଇଠୁ ଝିଅ ଶାଶୁକୁ ମନେ ପକେଇ- ବୋଉ ମ ବୋଉ କୁଆଡ଼େ ଗଲୁ ? କୋଉ ରାଇଜକୁ ଗଲୁ ? ଆଉ କ'ଣ ଆସିବୁ ? କହିଦେଇ ଶାଶୁ କଥା କହିବେ ;

—କାର୍ତ୍ତିକ ମାସ କରିଥିଲେ । ଶାଶୁ ମୋର ଆଇଁଷ ଛୁଉଁ ନ ଥିଲେ । ଆମ ଗଡ଼ିଆରୁ ବଡ଼ ବଡ଼ ମାଗୁର, ଗଡ଼ିଶା ଧରେଇ ସେଦିନ ଭଲ ତରକାରି କରିଥିଲି । ତା ବାପାକୁ ମୁଁ ଖାଇବାକୁ ବାଢ଼ିଚି, ବଡ଼ ବଡ଼ ଗଡ଼ି ମାଛ ଦେଇଚି, ଖାଉଚନ୍ତି ତ ଶାଶୁ ମୋର ଆସି ଠିଆ ହୋଇଗଲେ । ପୁଅର ଭାତଥାଳିକି ଏକ ଲୟରେ ଅନେଇ ରହିଲେ । ସେଠୁ ପାଖରେ ବସିଲେ । କହିଲେ, "ପୁଅରେ, ମୁଁ ତୋ ସାଙ୍ଗରେ ଖାଇବିରେ ପୁଅ !" ଏ ମା ! ଅମେ ତ ଟାଣି ତ ଅବାକ ହୋଇ ଅନେଇଚୁ ! ତ ପଚାରିଣାକ ଅସାର ଭାବିଲୁ— ଏ କ'ଣ ପ୍ରକୃତି ? ସିଏ କହିଲେ, "ଦିଅ, ଦିଅ, । ବୋଉକୁ ଆମ୍ବୁଳ ମାଛ ତରକାରି ଦିଅ, ଭାତ ଦିଅ ।" ମୁଁ ଦେଲି, "ହଁ ବୋଉ, ଖାଅ । ତମ ମନ ହଉଚି ତମ ପୁଅ ସହିତ ଖାଇବାପାଇଁ ।" ଆଲୋ ମାଆ ! ଭଲ କରି ମା' ପୁଅ ଖାଇଲେ । କିଛି ଦୂରରେ ମୋ ଦେଢ଼ଶୁର ଘର । ଶାଶୁ ମତେ କହିଲେ, "ମୁଁ ଯାଏଁ କି ତମାକୁ" —ମୋ ଦେଢ଼ଶୁରଙ୍କ ପୁଅ, ଶାଶୁଙ୍କ ବଡ଼ ନାତି —"ତେଲ ହଳଦୀ ଲଗେଇ ଦେଇ ଆସେ, ତୋ ପୁଅକୁ ଲଗେଇ ଦେବୁ । ସେଠୁ ଆମ ଆଗ ସାରେଁ, ଏଠିକି ଆସି ନାତିକୁ ହଳଦୀ ଲଗେଇ ସାରି କୋଳରେ ଧରି ଶୋଇବି ।" ଶାଶୁ ବାହାରିଗଲେ । ଯାଉ ଯାଉ ଅଧା ବାଟରେ ପଡ଼ିଗଲେ । ମୋ ପାଖକୁ ଖବର ଆସିଲା, ଶାଶୁ ପଡ଼ି ଯାଇ-ଛନ୍ତି । ମୁଁ ଦଉଡ଼ି ଗଲି । ଦେଖିଲି ବେଳକୁ ଆଉ କ'ଣ ଥାଏ ଲୋ ମା ! ଆଉ କାହିଁ ? ଆଉ କିଏ ଆସି ମୋ ପୁଅକୁ ତେଲ ହଳଦୀ ଲଗେଇ ଦେବେ । ମୋ ଝିଅ

ଟିକଏ ବଡ଼ ହେଲାଠୁ ମତେ କହୁଚ, "ହୋଉ, ମୋ ମା' କାହିଁ ? ସମସ୍ତିଙ୍କର ମା' ଅଛୁ, ମୋର କାହିଁ ?" ମୁଁ ତାକୁ ସମଜେଇ ସବୁ କହୁଲି । ମନେ ପଡ଼ଗଲେ ଅନ୍ତର ବଦାର ହୁଏ । ଆଉ କାହିଁ ଥା ? ଥା ଏ ବୋଲି କହୁନ୍ତ ନ, ନିଃଶ୍ୱାସଟେ ପଡ଼େ । ଟିକଏ ସମସ୍ତ ଚୁପ୍ ରହୁନ୍ତ । ସେଠୁ କଥାର ମୋଡ଼ ବୁଲେ । କହୁନ୍ତି, "ଆଲୋ ମା ଛୁଆବୋଉ, ଝିଅଟ ଦ'ଟା ଗୁଛବେ । ପୁଅ ପୋଷିବ, ଭଲ କର ଦୋ'ଟି ଖା । ପୁଅକୁ ଭଲ କର ଦ'ଟା ଶୁଆଇ ଦେ । ଅନ୍ଧାର ଗଡ, ନେଳଣ୍ଟି ବାରଅଟକୁ ଯାଇ ଥା । ଲୁହାଟାଏ ଅଣ୍ଟାରେ ଖୋସିଦେ । ପୁଅକୁ ନଘା ର'ଖ । ଆହା ! ଛୁଆବୋଉ ମୋର କ ଘରର ଝିଅ, ଏଠିକ ଆଇଚ । କ ସୁନ୍ଦର ତା' କଥା ! କେତେ ଧୀର ଗ୍ୱଲ !

ବୁଢ଼ୀଙ୍କ ଛୁଆବୋଉ ଯାଏ । ସେଆଡ଼ କାମଦାମ ସାର ପୁଣି ଆସେ । ବୁଢ଼ୀଙ୍କ ଘରଟିକୁ ଓଳେଇ ଦେଇ ଶୋଇବା ବଛଣା କରେ । ପାଣି ଢାଳଟି ରଖିଦଏ । ବୁଢ଼ୀ ପଗ୍ଚରନ୍ତ, "କଏ ମ ? ମୋ ଛୁଆବୋଉ ନା ମୋ ନାତୁଣୀ ?" ଜବାବରେ ଛୁଆବୋଉ କହେ, "ମା' ମ, ମୁଁ ପରା ! ଖାଇବାକୁ ଅଣିବ ମା' ?" "ହଉ ଦେ କ'ଣ ଦ'ଟା ଦବୁ ।" ଖାଇବାକୁ ଆଣିଦଏ ଛୁଆବୋଉ । "ହଉ ହଉ ଯା । ଆଉ କଛୁ ମୋର ଦରକାର ନାହିଁ ।" "ମା' ମ, ପନ ଦରକାର ନାହିଁ ?"

"ହଉ, ଦବୁ ତ ଦେ ଦନଟେ । କଏ ଗୀତ ଗାଉଚ ? ଆଁ ? ବ ବୁଜୀ ମୋର ? ଠାକୁରେ ତାକୁ କୋଟି ପରମାୟୁ ଦେଇ ଥାଆନ୍ତୁ । କେଡ଼େ ସୁନ୍ଦର ତା କଥା ! ଆଲୋ ମା, ତୋ ଶ୍ୱଶୁର ଶାଶୁଙ୍କ ଖାଇବା କଥା ବୁଝ । ବାଡ଼ ଚଣ୍ଡିକ ମୋ ହାତୁକୁ ଦବୁଟି ମା' । ଯା, ଖା ପିଅ ସାର ଭଲ କର କବାଟ କଲିବୁ । ନଣନ୍ଦକୁ ଧର ଶୋଇବୁ । ସକାଳୁ ନଣନ୍ଦ ଭାଉଜ ମିଶି ଦୋ'ଟି ଶାଗ କରବ । ଅନାବନା ଶାଗ ବାଇରେ କେତେ ଉଠିଚ । ଦୋ'ଟି କଖାରୁ ପତର ପକେଇବୁ । କାଦୁଅ କାଦୁଅ କର ହାଣ୍ଡିରେ ଖରଡ଼ବୁ ।"

ବୁଢ଼ୀଙ୍କର କଥା ଶୁଣ ଶୁଣୁ ଛୁଆବୋଉ ଟିକଏ ଘସାମୋଡ଼ା କରଦବ । ବୁଢ଼ୀ ତାଗଦା କରବେ, "ଯା ଯା, ଝିଅଟ ଶୋଇ ପଡ଼ବ. ନ ହେଲେ ସକାଳୁ ନଦ ଭାଙ୍ଗିବନ । ମୁଁ ତ ଏଇ ଦାଣ୍ଡକରରେ ଅଚ୍ଛ । ପାଟି ଶୁଣେଇବ । କଚ୍ଛ ଡରବନ । ଯା । ନାତ ମୋର କୋଉ ବନସ୍ତରେ ବୁଲୁଚ ବୁଲୁଥାଉ ।"

ଗତରେ ବୁଢ଼ୀଙ୍କର ପାଟି ଶୁଭୁଥିବ ! "ଆରେ ହେ କାଳିଆ ଭୂଆ ମାଗୁଣିଆଁ ! ତୁ କୋଉଠି ଶୋଇଲୁରେ ? ଏଁ—ଏ ତ କ'ଣ ଖସି କୋର୍‌ରେ

ଘୁଂଗୁଡ଼ି ମାରିଲଣି । ଗାଈଗୋରୁ ଠିକଣାରେ ବାନ୍ଧିଲୁ ନା ? ବାଛୁରିଟାକୁ ଆଡ଼ କରି ବାନ୍ଧିଚୁ ନା ନାହିଁ ? ନହେଲେ ଟୋପାଏ ଛତ୍ୟାଣ ଦେଖେଇ ଦବନା ? ମୋ ଅଣନାଉ ଖାଇବ କ'ଣ ? ଆରେ ହେ । ଗୋରୁ ଯେବେ ଫିଟିଯିବ ଶାଗ କିଆରି ନଷ୍ଟ କରିଦବ, ଦେଖ୍, ଖବରଦାର ! ଖାଇବା ବେଳକୁ ଛନ ଥର ଡକା କଂସା ଚେଣ୍ଡିବ, କାମ ବେଳକୁ ଘୁଙ୍ଗୁଡ଼ି ଶୁଣ ! ଆରେ ସେ ଗାଈଆଳ ଟୋକାଟ କୋଉ ଘରେ ଶୋଇଲା ?"

ପାହାନ୍ତା ପାହାନ୍ତା ଚୁଆବୋଉ ନିଦ ଭାଙ୍ଗି ଆସୁଥିବ । ବୁଢ଼ୀଙ୍କ କଥା ଶୁଭୁଥିବ, "ଆରେ ହେ ! କିଏ ଯାଉଚୁ ମୋ ଦୁଆର ବାଟେ ? ମୋ ବୋହୂ ଝିଅ ଉଠିବେ ଏଇନାକେ । କହୁ ଦଉଚି — ତମର ତମେ ସେ ବାଟେ ରାସ୍ତା ଫିଟା । ଏ ଶଅଳ ଯାଇଥା ମୋ ଦୁଆର ଦେଇ ରାସ୍ତା ପକେଇଦେବ ? ଭାରି ତମ ସୁଖ, ନାହିଁ ?"

ଏତିକି ବେଳେକେ ଶ୍ୱଶୁରଙ୍କ ସକାଳ ପ୍ରାର୍ଥନା ଶୁଭୁଥିବ—ଗୁରୁ – ଗମ୍ଭୀର ମୃଦଙ୍ଗ ସ୍ୱରରେ—

"ପ୍ରାତଃ ସ୍ମରାମି ରଘୁନାଥ– ମୁଖାରବିନ୍ଦଂ
ମନ୍ଦସ୍ମିତଂ ମଧୁରଭାଷି ବିଶାଳ-ଭାଲମ୍
କର୍ଣ୍ଣାବଲମ୍ବି-ଚଳ-କୁଣ୍ଡଳ-ଶୋଭି ଗଣ୍ଡଂ
କର୍ଣ୍ଣାନ୍ତ-ଦୀର୍ଘ-ନୟନଂ ନୟନାଭିରାମମ୍ ।"

ପୁଅଙ୍କର ଗୀତ ଶୁଣିବା ମାତ୍ରେ ବୁଢ଼ୀ ଚୁପଚାପ୍ ରହିଯାଆନ୍ତି । ଗୀତ ସରିବା ପରେ କହନ୍ତି, "ତା ବାପା ସବୁ କହୁଥିଲେ । ଚାରି ବରଷ ଝନୁ ଗୀତ ଗାଉଥିଲା ସେ ବାପା ତା'ର କହୁଥିଲେ—ଇଏ ପାଗଳ ହୋଇଯିବ, ଦିନଦିନ ଏତେ ଗୀତ ଗାଉଚି । ପୁଅ ମୋର ଏତେ ସୁନ୍ଦର ଗୀତ ଗାଏ । ସେମିତି ଯୋଗଜନ୍ମା ପୁଅ ମୋର । ଏମିତି ଏତେ ଗୀତ ମନେ ରଖି କିଏ ଗାଉଚି ବା ?" ସେଠୁ ଚୁଆବୋଉକୁ ଡାକିବେ, "ଆଲୋ ମା, ଏ ଚୁଆବୋଉ । ଆଇଲୁ ଟିକିଏ ମୋ ପାଖକୁ । ତତେ ଟିକିଏ ଅଣ୍ଟାଳି ଦଏଁ ।" ପାଣି ଡାଳରେ ହାତ ମାରିଦେଇ ପୁଣି ମନକୁ ମନ କହିବେ, "କେତେବେଳେ ଦାନ୍ତକାଠି ଛେଚି ପାଣି ଡାଳ ଦେଇ ଗଲଣି ! କେତେ କଥା ବୁଝିବ ! ଆଉ କିଏ ମୋର କାମ ଖାଲି କରୁଥିବ ? ପୁଅ କଥା ବୁଝିବ । ହଳିଆ ମୂଲିଆ କ'ଣ ଖାଇ ଚାଲିବାଲିକ ଯିବେ ବୁଝିବ । ମୁଁ ସିନା ବସିଚି ଖାଲି । ଆଖି ଗଲା ଦିନରୁ ତ ବାଡ଼ି ଧରି ବସିଚି ।"

ବୁଢ଼ୀଙ୍କର ଯୋଡ଼ିଏ ଆଖି ସେଇ ଗାଁରେ ଅପରେସନ ହେଲା । ସାତ ଦିନ ଯୋଡ଼ିଏ ଘରେ ରହିଥିଲେ । ସେଇ ଘରେ ତାଙ୍କ ବଡ଼ବୋହୂ ଜୁଆବୋଉର ଶାଶୁ ଖାଇବାକୁ ଦେଇ ଆସୁଥିଲେ । ଜୁଆବୋଉକୁ ଭାରି ଡର ଲାଗୁଥିଲା । ସାତଦିନ ଧରି ବୁଢ଼ୀଙ୍କୁ ଦେଖା କରିବାକୁ ବି ଯାଇ ନ ଥିଲା । ଅଠଦିନ ସକାଳୁ ଉଠି ବୁଢ଼ୀଙ୍କୁ ଭଲ ଦେଖା ଯାଉଛି । ସେ ଉଠି ବାରପଟକୁ ଏକୁଟିଆ ଆସିଛନ୍ତି । ଜୁଆବୋଉ ଉଠି, ମୁହଁ ଧୋଇ ଫେରିବା ବେଳକୁ ବୁଢ଼ୀ ଆସି ତାଙ୍କୁ ଜାବୁଡ଼ି ଧରିଲେ । ଡରରେ ମା'ଙ୍କ ଆଖିକୁ ଚାହିଁ ପାରିନି ଜୁଆବୋଉ । ବୁଢ଼ୀ କହୁଛନ୍ତି, "ଆଲୋ ତୋ ମୁହଁ ମତେ ଏତେ ସୁନ୍ଦର ଦିଶୁଚି । ଡଗେ ଯାହା ଅଣ୍ଡାଳି ଅଣ୍ଡାଳି ଦେଖିଥିଲି ସିନା ! ତୁ ଡରନା ମ ମା' ।"

କେତେ ଭଲ ପାଉଥିଲେ ଜୁଆବୋଉକୁ । ବୁଢ଼ୀ ପଞ୍ଚାନବେ ବର୍ଷରେ ଯାଇଥିଲେ । ଛଅ ଦିନ ଥାଏ, ଦିନେ ଜୁଆବୋଉ ପାଖକୁ ଘୁଂଚ ଘୁଂଚ ଲାଗି ଆସିଲେ । ଚଳୁନ ଧରି କହିଲେ, "ମା'ମ, ଏ ମା । ତୁ କ'ଣ ଏବେ ଗୁଣ୍ଡିକରି ଗାକୁ ଯାଉଚୁ କି ?" ଜୁଆବୋଉ କହିଲା, "ଅଛି ତ !" ବୁଢ଼ୀ ତା ମୁହଁକୁ ଅନେଇ ସେଇମିତି ଚଳୁନରେ ହାତ ରଖି କହିଲେ, "ମା' ମ, ମୁଁ ମରିଗଲା ପରେ ତୁ ସିବୁ । ଏବେ ଯାଆନା ।" ଜୁଆବୋଉ ଖାଲି ଅନେଇ ରହିଥିଲା ।

ଯା ପରେ ଠିକ୍ ଛଅ ଦିନ ବୁଢ଼ୀ ବଞ୍ଚିଥିଲେ । ଜୁଆବୋଉ ବରାବର ତେଜମାଙ୍କୁ ମନେ ରଖିଥିଲା । ପ୍ରତିବର୍ଷ ଶ୍ରାଦ୍ଧଦିନରେ ଜୁଆବୋଉର ମନେ ପଡ଼ିଯାଆନ୍ତି ତେଜମାନେ । ଶ୍ରାଦ୍ଧ ଆଗ ରାତିରେ ସ୍ୱପ୍ନରେ ଦେଖା ଦେବେ । ଆଶ୍ଚର୍ଯ୍ୟ ହୁଏ ଜୁଆବୋଉ, "ମତେ କି ଦେଖା ଦଉଛନ୍ତି ଇଏ !" ଖାଇବାକୁ ମାଗୁଥିବେ, ବସିଥିବେ, କଥା ହଉଥିବେ । ଜୁଆବୋଉ ପିଲାଟି ଦିନରୁ ଏମିତି ଡରେଇ ଯେ ଅନ୍ଧାର ଘରକୁ ଯାଏନି । ସେଇ ପୁଣି ପ୍ରତି ବର୍ଷ ତେଜମାଙ୍କୁ ଦେଖେ ! ସେ ଯାହା ଯାହା ଭଲ ପାଉଥିଲେ, ତିଆରି କରେ । ଚଉସମୂଳେ ଲିପାପୋଛି କରି ପାଣି ଢାଳି, ପିଢ଼ା ଥୋଇ ପତରରେ ବାଢ଼ିଦିଏ । ପାଣି ଛଡ଼େଇ ଦିଏ । ତା'ର ବିଶ୍ୱାସ ତେଜମା ଖାଆନ୍ତି ।

# ସର ମାଆ ଓ ରାଜ

କିଏ ଜଣେ ଆସି ଡାକ ପକେଇଛି,

—"ବୋହୂ ସାଆନ୍ତାଣୀ ମ ! ନାଳ କରୁଚ କଅଣ ଏତେ ? କଅ, କଅ । ପୁଅ ବାବୁଙ୍କ ଲାଗି ମାଆ ସାଆନ୍ତାଣୀ କହୁଥିଲେ ପରା, ଘିନକ ଆସିଚ ।"

ପୁଅକୁ ତେଲ ହଳଦୀ ଲଗାଉଥିଲେ ଶାଶୁ ସାଆନ୍ତାଣୀ । କହିଲେ,

—"ଗୁହାଳ ଗଣ୍ଡେ ଡବାରେ ଆଣିଲ ମା ।"

ବୋହୂରାଣୀ କିଛି ବୁଝି ପାରୁନାହାନ୍ତି । ଗୁହାଳ କିଏ ନବ ଏ ସଞ୍ଜ ବେଳଟାରେ ?

—"ଯା'ମ ମା' ! ଯା ! ଗୋରଚନା ଆଣିଚ ପୁଅ ଲାଗି ।"

କମିତି ବାହାରକୁ ଯିବେ ? କିଏ କାଲେ ଦେଖିବ ।

—"କିଏ ନାହିଁ ମ ସାଆନ୍ତାଣୀ ! ଆସ ! ଆସ ! ନେଇଯାଅ । ମୋ କାନରେ ଧଅ ଗୁହାଳ । ଗୁହାଳ ଦେଖୁଁବଲେ ଏତେ ନାଳ କରୁଚ ! ବାବୁ ଆସି ନାହାନ୍ତି କି ? ବାବୁ ଆମର କେବେ ଆସିବେ ? କେତେଦିନୁଁ ବାବୁଙ୍କର ଆମର ଦେଖାନାହିଁ !"

ବୋହୂ ସାଆନ୍ତାଣୀ ଗୁହାଳ ଦେଇ ଚୁପ୍ ଚାପ୍ ଲେଉଟ'ଣି ପୁଣି ଶୁଣନ୍ତି,

"ପୁଅକୁ ଗୋରଚନା ଟୋପାଏ ମଥାରେ ଲଗାଇଦବ, ଆଉ ଟିକିଏ ଖିରରେ ଘୋରି ଚଟାଇଦେବ । କାହାରି ନଜର ଲାଗିବ ନାହିଁ । ପୁଅବାବୁ ଭଲ ହେଇ ଥାଆନ୍ତୁ । ଶଶୀକଳା ପରି ବଢ଼ନ୍ତୁ ।"

ଗୋରଚନା ଆଣି ଶାଶୁଙ୍କ ପାଖରେ ଦେଲେ, ପଚାରିଲେ—

"ସିଏ କିଏମ ?"

"ସିଏ ପରା ସୁକୁଟା ହାଡ଼ି ମାଇପ । ଆମ ବାଡି କରେ ତା' ଘର ଦିଶୁଚ । ସେ ଗାଁ'ର ସବୁରି ଘରେ ନେଇ ଗୋରଚନା ଦିଏ । ହଣ୍ଡୀ ଝିଅ ! ବରଷକର ବୋହୂ ହେଲଣି ଆସି, ସବୁବେଳେ ଲାଜ ! କମିତି ଚଳିବ ଆଉ ଚଳାଇବ ସବୁ ?"

ମଝିରେ ମଝିରେ ଗୋରଚନା ଧରି ଆସେ । କେବେ ଲୁଗାଖଣ୍ଡେ, କେବେ ସ୍ନୁହଲ ଗଣ୍ଡାଏ ନଏ । ଗୋଲ୍‌ଗୋଲ୍ ବାହୁ ତା'ର । ବାହୁରେ ଚୂଡ଼ା କୁଟାଇଥାଏ । ଗୋଡ଼ରେ ଚଟାର ଝଲୁଟିଏ । ସିନ୍ଦୂରଟିକା କପାଳରେ ଚଟାର ଫୁଲୁଟିଏ । ପାନ ଖାଇ ଖାଇ ହସି ଦେଉଥିବ—ଜାମୁକୋଳି ପରି ଦାନ୍ତ ଦିଶୁଥିବ । ବେଣୀ ମାଇପାଁଟିଏ । ମୋଟିମାଟି । ଡେଙ୍ଗା ମଧ୍ୟ । ବେକରେ ବଡ଼ ବଡ଼ ନାଲି ପୋହଳାର ମାଳଟିଏ । ବଡ଼ ହସ ଖୁସିଆ । କଥାବାର୍ତ୍ତା କରିବାକୁ ଆଗଭର ହେଇ ମାଡ଼ି ଆସୁଥିବ । ହାଡ଼ିଆଣି ହେଲେ ମଧ୍ୟ, ଦିଶେ ନାହିଁ ମଇଳା ଅପରିଚ୍ଛନ୍ନଥାଣୀ । ସବୁଜ ରଙ୍ଗର ବା ନୀଳରଙ୍ଗର କନ୍ଥା ଖଣ୍ଡେ ପିନ୍ଧିଥିବ । ମାଉସିଆ ଦେହ ତା'ର ଅତି କଳା ନୁହେଁ । ରହସ୍ୟ କରି କଥାଗୁଡ଼ା କହୁଥିବ । ଧାଇ କାମକରେ । ଝିଅକୁ ମାଆକୁ ତେଲ ଲଗାଇଦିଏ । ଲୁଗାପଟା ଧୋଇ ଆଣେ । କାହାକୁ ନାଆ, କାହାକୁ ନଣନ୍ଦ କରି ଟାହି ଟାପରା କରି ହସାଇ ହସାଇ ପେଟକଥା କହିଦିଏ । ଦିନେ କହିଲା —

"ହାଆନ୍ତାଣୀ ମ ! କଅଣ ଭହିବ !

ଏ ଜାହୁରୀ ମ ! ମୁଁ ଗଲି ବଣକୁ । ମୋ ପଛେ ପଛେ ସିଏ ବି ଗଲା । ଯେଉଁଠି ଗହଳିଆ ବଣ ଦେଖିଲି, ଡାକିଲା -- ଆସ୍ ମୋ ପାଖକୁ ! ମୁଁ ଯେତେ କହିଲେ ସେ କ'ଣ ଆଉ ମାନିଲା ? ହସ ମାଡ଼େ ବୋହୂ ସାଆନ୍ତାଣୀଙ୍କି, ଲାଜ ମଧ୍ୟ ମାଡ଼େ । କଅଣ ଏଇଟା ଗପି ଯାଉଚ ଆସି ? କିଏ ଶୁଣିବ ଏଗୁଡ଼ା ! ନାଃ, ଛି, ଛି, ।"

ତୃତୀୟ ପୁଅଟି ହେଲାବେଳେ ସୁରମାଆ ଡାକରା ହେଇ ଆସିଥିଲା । ତେଣୁ ଆତୁର ପାଖେଇ ଆସିଲା ।

—"କାନ୍ଦନା ମ ବୋହୂରାଣୀ । ବାପା ପରା ଜନମ ହୋଇଛନ୍ତି । ତା'ପାଇଁ ଆଉ କାହିଁକି ଦୁଃଖ କରୁଛ ? ବାବୁ କେଉଁଠି ଅଛନ୍ତି ଆମର ? ଆସନ୍ତା ବରଷକୁ ଆଉ ଗୋଟେ ପୁଅବାବୁ ଆସିବେନା ?"

ହସି ହସି ଜାହୁରୀ କଥା କହୁଥିବ । ଚୁପ୍ ଚୁପ୍ ବୋହୂ ହସି ପକାଇବେ । ପୁଅ ଝିଅ ତା'ର ପାଠ ପଢ଼ୁଥାଆନ୍ତି । ଗାଁ ସ୍କୁଲରେ । ଗୋରା ଗୋରା ପୁଅଝିଅ ତା'ର ।

—"ମୁଁ ସିନା ଇମିତି ସାଆନ୍ତାଣୀ, ଜାହୁରଟା ଗୋରା ଯେ ! ଦେଖନ୍ତୁ ପୁଅ ଝିଅଙ୍କୁ ମୋର ।

ସୁରମାଆ ଚାଲିଗଲା ବେଳେ, ଜେଜେମା' ଡାକ ପକେଇବେ —"ଆଲୋ ଏ ସୁରମାଆ, ଛୁଆବୋଉ ମୋର କେମିତି ଅଛୁ ? ଅଣନାଥ ମୋର କେମିତି ଅଛୁ ? ଭଲଛ ? ଭଲକରି ଦେଖୁଚ୍ଛା ଘସି ମୋତେ ?"

"ହଁ ହଁ ମା । ଆସୁନ ବୁଢ଼ୀମା ।"

"ନାଇଁମ ! ବଳେ ସେ ଅନୁଡ଼ିକୁ ବାନ୍ଧାଣଲେ ମୋ ଡୋଳକୁ ଦବନ ! ଆଜ୍ଞା ନାଥ ମୋର ବନସ୍ତରେ ଚାଲୁଥାଉ । ଛୁଆ ଗୁଡ଼େଗି ତାକୁ ଧାର୍ଣ୍ଣି ହୁଅନ୍ତୁ । ଛୁଆବୋଉ ମୋର ପାନ ବଢଟେ ଭାଙ୍ଗି ଦବ ଯେ, ଗୁଆକୁ ଚୂନ ଚୂନ କରିଥିବ । ଅଳପ ଚୂନ ମାରିଥିବ, ଖଇର ବଢଟେ ଦବ । ତା ପାନ ଖଣ୍ଡିକ ବଡ ସୁଆଦ ଲାଗେ ଲୋ ! କୋଉଦିନ ଛୁଆବୋଉ ମୋର ପାନ ଭାଙ୍ଗିବ ମୁଁ ଅନେଇଛୁ ।"

"ହଁ ବୁଢ଼ୀମା" କହିଦେଇ ସୁରମାଆ ଚାଲିଯାଏ । କହିଯାଏ ସଞ୍ଜ-ବେଳକୁ ଆସିବ । କେତେକାମ କରିଦିଏ । ତା ହାତ ଭଲ । ତେଣୁ ତାକୁ ସମସ୍ତେ ଡାକନ୍ତି ତା ମନରେ ଦୁଃଖ ନ ଥାଏ, ସବୁବେଳେ ହସି ହସି ।

ସୁରମାଆ ଆଉ ନାହିଁ । ମନେ ପଡ଼ିଯାଏ ତା'କଥା । ଦେଖିବାକୁ ଇଚ୍ଛାହୁଏ । ତା' ଜାଡୁସ ବି ଗଲଣି । ମଣିଷ ଚାଲିଗଲେ, ଗଳ୍ପ—ଚିରଦିନ ପାଇଁ ।

ରାଜ । ପାଲୁଣି ସେ । ଆଠକାଳି ବାରମାସୀ ତା'ର ଖେଳାଳପା । ତା'ର ହାତରୁ ଝରି ଲାଗିଯାଇଛି ଅମୃତ ଖେଳାରେ ହୁଏତ । ଖେଳା ସିଂମଣ୍ଡ ହୋଇଗଲାଣି । ଆଉ ଲିପିବାକୁ ପଡ଼ୁନାହିଁ ।

କାମ ସାରି ଖେଳାଅଡ଼ିକୁ ଗଲାବେଳକୁ ରାଜ ଲିପୁଥିବ । ପଚାରି ସୁନ୍ଦରଗଢ଼ଣ ମାଇପିଟିଏ । ମଧୁ ଝରିଲା ପରି କଥାଗୁଡ଼ିକ ତା'ର,

"ବୋହୂ ମା ! ଇଆଡ଼େ ଆସିଲ ! କାମ ଦାମ ସରିଲା ?"

ବାରଟା ଗୋଟାଏ ବାଜିଥିବ । ଶୀତଦିନ ହୋଇଥିବ । ଖରା ପଡ଼ିଥିବ । ରାଜର ଖେଳାଳପା ଚାଲିଥିବ । ଝିଅଟିଏଥିଲା ତା'ର ପାଠ ପଢ଼ିଥିଲା । ଶାଶୁଘର ଯାଇଥିଲା ଦୁଅ ଛୁଆଟିଏ ହୋଇଥିଲା । ଥାଣ୍ଟୁ ଗଣ୍ଠି ବାତ ହୋଇଗଲା । ତା'ପରେ ସେ ଗୋଟେ ଗୋଡ଼ରେ ଘୋଷରେଇ ଘୋଷରେଇ ଚାଲୁଥିଲା । ମାଥା ପାଖରେ

ଥାଏ । ବାପ ଥାଏ ତା'ର । ତା ନାଁ—ଗୋବରା । ପିଲାଟିକୁ ତାର ରଖିଲା ତା' ବର । ସ୍ତ୍ରୀଟି ଯୋଗୁଁ ମା'କୁ ନେଲାନାହିଁ । ପିଲାଟି ହେଲାଦିନୁ ମାତ୍ରେ ତା ଗୋଡ ସ୍ତ୍ରୀଟା ହେଇଗଲା । ଗଜ ଅଗତ୍ୟା ଝିଅକୁ ରଖିଥାଏ । ତା'ର ଆଉ ଉପାୟ ନାହିଁ । ଗଜ ମନଦୁଃଖରେ କହେ,

"ଆଉ କ'ଣ କରିବ ? ପୁଅଟିକୁ ଦେଖିଲ, ଝିଅକୁ ମୋର ନେଲାନାହିଁ । ଯାହା ଦୁଃଖ ଭଲ—ମା, ଝିଅ, ବାପ ଚଳୁଛୁ । କରମରେ ତା'ର ଏଇଆ ଥିଲା !"

କେତେ ଧୀର ଧୀର କଥା କହୁବ ।

କେବେ ତା'ର ଝିଅ ମଲାଣି । ଗଜ ମଧ୍ୟ ମଲାଣି । ଗୋବରା ଭିକ ମାଗି ବାବାଜୀ ପରି ବୁଲୁଛି । କେତେ ଅଭ୍ୟାସରେ ଥିଲା । ଗଜ ସବୁ କରି ଧରି ହଏ । ଗୋବରା ହଲଲପାଣିରେ ଗୋଡ଼ ଦଉ ନଥିଲା । ଏବେ ଖଞ୍ଜଣି ବଜାଇ ଭିକ ମାଗୁଛି । ଘୁରୁଲ ମାଗି ମାଗି କରି ଘନ୍ଧବାଡ଼ି ଖାଉଛି । ଦିନକୁ ଦିନ ବୁଢ଼ା ହଉଛି । ଗଜ ତା'ର ଏତେ ଭଲ । ପୁଣି ଏତେ ସୁନ୍ଦର ଝିଅଟି—ଗୋଟିଏ ଘୁରୁଲରେ ଗଢ଼ା । ଯେମିତି ହେଲେ ଝିଅ ଆଗେ ଗଲା, ମା ତା ପଛେ ପଛେ ଗୁଲିଗଲା ଝିଅକୁ ଝୁରି ଝୁରି । ଅଲସୁଆ ବୁଢ଼ା କାମକୁ ଡରି ଖଞ୍ଜଣି ବଜାଇ ଘୁରୁଲ ଗଣ୍ଡିଏ ଲାଗି ଯା ଦୁଆର ତା ଦୁଆର ହେଲା ।

# ତୁ ତ ହଗୁରୀ ମୁତୁରୀ ହେଲୁ

କୁମାସ୍ତି ପ୍ରତେ ସଞ୍ଜବେଳେ ସଞ୍ଜବତୀ ଜାଳିଦେଇ ବଡ଼ ଚଉଁରିମୂଳେ ନଇଁପଡ଼ି ମୁଣ୍ଡିଆ ମାରି କହେ,

ଦୀପଂ ଜ୍ୟୋତି ପରଂବ୍ରହ୍ମ
ଦୀପଂ ଜ୍ୟୋତି ଜନାର୍ଦ୍ଦନ
ଦୀପଂ ଜ୍ୟୋତି ହରତେ ପାପ
ଦୀପଂ ଜ୍ୟୋତି ନମସ୍ତୁତେ ।

ମୁଣ୍ଡିଆମାରି ସାରି ଆସି ସାନ ଭାଇଭଉଣୀମାନଙ୍କୁ ଧରି ପିଣ୍ଡା ଉପରେ ଶୀତଳପାଟି ବିଛାଇ ଦିଏ । ସଞ୍ଜ ଅନ୍ଧାର ଘେରିଇ ଆସିବ. ପ୍ରାର୍ଥନା କରିବେ । ତା ଉପର ବଡ଼ଭାଇ ତା ପାଖରେ ବସିଥିବେ । ସମସ୍ତେ ମିଶି ଗାଇବେ—

ଆହେ ଦୟାମୟ ବିଶ୍ୱବିହାରୀ
ଘେନ ଦୟାବହି ମୋର ଗୁହାରି ।

ପ୍ରାର୍ଥନା ସରିବ । ଭାଇଭଉଣୀସବୁ ମିଶି ଠାକୁରଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆମାରି-ସାରି ପାଠପଢ଼ି ବସିବେ । ପଢ଼ିସାରିଲେ ଖାଇପିଇ ଶୋଇବେ ।

ସକାଳୁଉଠି ନିତ୍ୟକର୍ମ ସାରି ଆସିବାବେଳକୁ ସୂର୍ଯ୍ୟ ନ ଉଠୁଣୁ ଜେଜେମା ତା'ର ବଉଳମୂଳେ ଠିଆ ହୋଇଥିବେ । ପ୍ରତେ କାର୍ତ୍ତିକ ଟୋପଲି ଧରି ଯାଇବ ମା ପାଖକୁ । ବଉଳଫୁଲ ବିଛାଇ ହୋଇ ପଡ଼ିଥିବ । କାର୍ତ୍ତିକ ଝୁଙ୍କୁଡ଼ିଟିରେ ଗୋଟିଏ ଗୋଟିଏ ଫୁଲ ଗୋଟେଇ ରଖିବ । ସାନ ଭାଇଭଉଣୀ ଉଠି ଖୋଜିବେ ପ୍ରତେକୁ । ଖୁଡ଼ୀ କହିବେ—ବୋଉଳ ଗଛମୂଳକୁ ଯାଇଛି'ମ ! ଅପା ସବୁ ଫୁଲ ଗୋଟଉଛି ।

ଆହୁରି ଯେ କେତେ ଫୁଲ ପଡ଼ୁଛି । ଫୁଲ ବାସ୍ନାରେ ମହକି ଉଠୁଛି । ସୂର୍ଯ୍ୟକିରଣ ଝଲ୍ସିଉଠି ପଡ଼ୁଛି । ଭାଇଭଉଣୀଟିମାନେ, ଅପା ମତେ ଫୁଲ ଦେ, କହି ଟିକିଟିକି ହାତ ଗୁଡ଼ିକ ବଢ଼ାଇ ଦେଇ ଅଞ୍ଜୁଳି ପୂରିଗଲାଯାଏ ହାତ ଦେଖେଇ ଠିଆ ହୋଇ ରହିଛନ୍ତି । ମା ଗଲେଣି । ସବୁ ବାଣ୍ଟିଦେଇ ଫୁଲଗୁଡ଼ିକ ପ୍ରତେ ଛୁଞ୍ଚିରେ ସୂତା ଲଗାଇ, ମାଳାଟି ଲମ୍ବା ହେଲାଯାଏ ।

ପାଞ୍ଚବରଷର କୁମାସ୍ତି ଝିଅଟିଏ । କେତେ କାମ କରିପାରେ ସେ ! ଆଉ ସ୍କୁଲ ବେଳ ହେଇଯିବ ଯେ ଗାଧୋଇ ଯିବ । ଖାଇସାରି ସ୍କୁଲକୁ ଯିବ । ଦିନକର ସ୍କୁଲରୁ ଫେରୁଛି । ଠାକୁର ମା ନଇଁ ନଇଁ ବାଡ଼ି କରିକରି ଫେରୁଛନ୍ତି ।

ମା'ଆ ତା'ର ଆଗେ ଆଗେ ଓଦା ଲୁଗା ପିନ୍ଧି ଅଛନ୍ତି । ପ୍ରଣବ ପଚାରିଲା, "ମା" ଠାକୁରମା କ'ଣ ବାନ୍ତି କରୁଛନ୍ତି ପାଣିଗୁଡ଼ାକ ?"

କହନ୍ତି ମା । ଯାହା ହଇଯାଏ ହେଉଛି ମୁଁ ଲୋ ମା ଘଡ଼ିଏ ହବ ! ମୁଁ ପୋଖରୀ କରରେ ବସିଚ, ଦେଖୁ ଦେଖୁ ଇଏତ ଗ ଧୋଉଚନ୍ତି । ଡାଳଟି ପାଣିରେ ବୁଡ଼ିଗଲା । ଡାଳଟିକୁ ଆଣିବାକୁ ଯାଇ ବୁଡ଼ି ଗଲେ । ମୁଁ ଦଉଡ଼ି ଗଲି । କେତେ ପାଟିକରି ଡାକିଲି । କାହାଁରିକୁ ଶୁଭିଲା ନାହିଁ । ପୋଖରୀ ଭିତରେ ପଶିଲି । ସେତ ବୁଡ଼ିବାକୁ ଗଲେଣି । ଚୁଟି ଟିକଏ ଦିଶୁଥିଲା । ମୁଁ ପାଣି ପିଇଗଲି । ଚୁଟିକୁ ଧଇଲି । ଭିଡ଼ି ଆଣିଲି । ପାଣିରୁ ଅସିବାର ଅବସ୍ଥାମରି ହେଇ ବସିଗଲି । ଓହୋ, କି କଷ୍ଟ । ଯେତକ ଗାଳି ଦେଲି । ହେଇତ ମୁଁ ଆସୁଚ-ମୋ ପଛେ ପଛେ-ଦେଖୁଚୁ ···ଏ ହୁଅନ୍ତି ।"

ପ୍ରଣବ ଆଁ କରି ଠିଆ ହେଇଛି—ବୁଢ଼ୀ ଯେ କହି କହି ହସି ହସି ଗ୍ଲଲିଛନ୍ତି ତାଙ୍କ ଶୋଇବା ଘରକୁ ! ପ୍ରବେଡ ବୋଉକୁ, ତା ଖୁଡ଼ୀକୁ ଡାକି ପଠାଇଲା । ବୋଉ ଆଉ ଖୁଡ଼ୀ ଆସି ଦେଖିଲେ—ଶାଶୁଙ୍କ ଗୋଟେଇଁ ଶାଶୁଙ୍କ ଅବସ୍ଥା । ପ୍ରଣବ ମା'ର ହାତଧରି ନେଇ ଶୁଖିଲା ଲୁଗା ଆଣି ବଦଳି ଦବାକୁ କହିଲା । ମା ଖାଇବାକଥା ବୁଝିଲା । ବୋଉ ତା'ର ଯାଇ ଠାକୁରମାଙ୍କ ବଛଣା ବିଛାଇଦେଇ ଶୁଆଇଦେଲେ । ବୁଢ଼ୀ ବୋହୂଙ୍କ ଗାଳି ଶୁଣି ହସୁଛନ୍ତି । ସେତ ପୋଖରୀରେ ଡୁବି ମରିଥାନ୍ତେ, ବୋହୂର ସାହସରେ ବଞ୍ଚି ଆସିଛନ୍ତି ପୋଖରୀ ଭିତରୁ । ହିଃ ହିଃ ହେଇ ହସୁଛନ୍ତି ।

ବିକକର ଠାକୁରମାନଙ୍କର ଦେହ ଖରାପ ହେଇଛି । ସେ ଶୋଇ-ଛନ୍ତି । ଘର ଅନ୍ଧାର ହେଇଛି । ପିଣ୍ଡା ଅନ୍ଧାର ହେଇଛି । ସପ ବିଛାଇଦେଇ ପ୍ରଣବର ଜେଜେମା ଶୋଇଚନ୍ତି ପ୍ରଣବର ହାତଖିଇକୁ ଧରି । ନିଦରେ ଶୋଇନାହାନ୍ତି । ପ୍ରଣବ ଅନ୍ଧାରରେ ଠାକୁରମା ପାଖକୁ ଯାଉଛି । ମୁଣ୍ଡ ଆଉଁସି ଦଉଛି । ପିଠିରେ ହାତ ବୁଲାଇ ଆଣୁଛି । ପୁଣି ଗ୍ଲଲିଆସୁଛି ମା ପାଖକୁ ତା'ର । ଠାକୁରମା ଆଉଥରେ ବ୍ୟସ୍ତହବା ଶୁଣି ଯାଉଛି, ପିଠିରେ ମୁଣ୍ଡରେ ହାତ ବୁଲାଇଦେଇ କହୁଛି, କାହିଁକି ଏତେ ବ୍ୟସ୍ତ ହଉଛୁ ? ହଗୁଆ ମୁରୁଖଟିଏତ ହେଲୁ । ମୁଁ ଆଉ କ'ଣ କରିବ ? ମୋ ମା ପରି ହେଇଥାଆନ୍ତୁ କି ମୁଁ ଗୋଡ଼ ଚପି ଦିଅନ୍ତି । ତୁ ତ ହଗୁଆ ମୁରୁଖଟି ହେଲୁ ।"

ତା ମା ଆଉ ଶୋଇପାରିଲେ ନାହିଁ । ଉଠିକରି ବୋହୂମାନଙ୍କ ପାଖକୁ ଗଲେ । କହିଲେ, 'ଦେଖିଲୁ ମା ! ମା କିମିତି ଅନ୍ଧାରରେ ଶୋଇଛନ୍ତି । ଦେହ ଭଲନାହିଁ । ପ୍ରଣବ ଯାଇଁ ଅନ୍ଧାରରେ ତାଙ୍କୁ ଆଉଁସି ଦଉଛି, କେମିତି ବୁଝେଇ କଥା କହୁଛି । ଅନ୍ଧାର ହେଇଛି । ମୁଁ ଯାଏ, ମା'ଙ୍କୁ ଦେଖେ ।"

# ମାଛ କଣ୍ଟା

"ମା'ଳି ଧଣ ଜପକୁ ମତେ ଭଲ ଲାଗୁନାହିଁ । ମା ମ,! ଗୋଟିଏ ଗପ କୁହ । ସଞ୍ଜ ହେଇଗଲାଣି ।"

"ରାଧେକୃଷ୍ଣ ! ରାଧେକୃଷ୍ଣ !"

"ତମର ଖାଲି ଜପ । ପୂଜା, ଚଉଁରା ପୂଜା ! ମତେ ଅନ୍ଧାରକୁ ଡର ଲାଗିଲାଣି ।"

"ଅନ୍ଧାର ଘରକୁ ଡରୁଥାଅ ତୁ,
ବଡ଼ହେଲେ ଯାଉ କୁଞ୍ଜବନକୁ ।"
"ଇମିତ କାହିଁକି କହୁଛ ମତେ ?"
"ତତେ ନାଇଁମ ! ରାଧାକୁ ।
ଜନ୍ମ ଆଉଣ ସହେ ଦୁଃଖ
କେବେହେଁ ନୋହୁବ ବିମୁଖ ।"
"କିଏ ?"

ଅନ୍ଧାରକୁ ଡରୁଥାଉ, ରଖିଯାଉ ଗୋରୁ

ଜନକ ଜନନୀ ସୁଖ କାହିଁପାଇଁ ଛାଡ଼ୁ ମୋ କଳା ମାଣିକରେ ।"

"ମୁଁ କାହିଁକି ଗୋରୁ ରଖିବି ?"

"ନାଇଁମ, ମାନା । ତୁ ନହୁଁ । କୃଷ୍ଣ ।"

"ଗପଟିଏ କହିବ ନାହିଁ ?

ମା' ଆପେ ଆପେ ଇମିତ ଗାଇଥାନ୍ତି । ନାତୁଣୀଟି ବରାବର ବ୍ୟସ୍ତ କରେ । ମା ପାଖରେ ଆସି ବସିଲେ, ଗପ କହିଲେ, ତା ଡର ଛୁଡ଼ିଯିବ ।

ପୁଣି ପଚାରିଲା, "କହିବ ନାହିଁ ?"

"ହଉଲେ ମା' ଶୁଣ—

ସାତଭାଇରେ ଭଉଣୀଟିଏ । ଭାଇମାନେ ଚାଲିଯା'ନ୍ତି ନିଜ ନିଜ କାମରେ । ଭଉଣୀଟି ଏକୁଟିଆ ଘରଭିତରେ ରହୁଥାଏ । ରନ୍ଧାବଢ଼ା କରେ ।

ଘର ଗୁଣଢରେ ପାଚଶ୍ରୀ ବୁଲୁଛି । ଭିତରେ କୂଅ । ଡାଲି, ଗୁଡ଼ିଆ, ଟେଣ୍ଡାପଣ୍ଡ ତେଲ, ଲୁଣ, କାଠ—ପ୍ରତ୍ୟେକ ସାମଗ୍ରୀ ଘରେ ଭାଇମାନେ ରଖିଦେଇଥାନ୍ତି । ତା'ର କିଛି ଅସୁବିଧା ହୁଏ ନାହିଁ । ଦିନକର ଗୋଟିଏ ଅସୁର ଆସିଲା । ଝିଅଟିକୁ ଜଗା କଲା । ଭାଇମାନେ ସଞ୍ଜରେ ଘରକୁ ଫେରିଲେ । ଭଉଣୀଟି ଖାଇବାକୁ ଦେଲା । ଅସୁର କଥା କହିଲା !

ପରଦିନ ଭାଇମାନେ ଘରେ ଲୁଚି ରହିଲେ । ଝିଅଟି କୂଅରୁ ପାଣି କାଢୁଛି, ଅସୁର ଆସି ପାଚେରି ଉପରେ ଠିଆହେଲା । ସବୁ ଭାଇମାନେ ଆସିଲେ । ଅସୁରକୁ ଟାଣି ଆଣିଲେ । ଅସୁର ସହିତ କେତେ ସମୟ ଯୁଦ୍ଧ ଲାଗିଲେ । ମଲାମାର ପିଟାପିଟି ହେଲେ । ଶେଷରେ ମାରିଦେଇ, ଖଣ୍ଡ ଖଣ୍ଡ କରି କାଟି ଦୂରକୁ ଫୋପାଡ଼ିଦେଲେ । ଭାଇମାନେ କାମକୁ ବାହାରିଗଲେ । ଭଉଣୀଟି ଘର କାମରେ ଲାଗିଲା । ମାଟି ମାଠିଆ ଧରି କୂଅରୁ ପାଣି ଆଣିବାକୁ ଗଲା । ସେଠି କ'ଣ ହୋଇଛି ନା, ଅସୁରକୁ କାଟିବାବେଳେ ଟୋପାଏ ରକ୍ତ କୂଅରେ ପଡ଼ିଯାଇଛି । ରକ୍ତଟୋପାକରୁ ଗୋଟେ ବଡ଼ ମାଛ ହୋଇଯାଇଛି । ଝିଅଟି ମାଟି ମାଠିଆ ପକେଇଲା ବେଳକୁ ମାଛଟ ମାଠିଆ ଭାଙ୍ଗିଦେଲା । ପିତଳ ମାଠିଆ ପକେଇଲା, ଚେପା କରିଦେଲା । ଝିଅଟି ପାଣି ଆଣି ପାରିଲାନାହିଁ । ରାନ୍ଧିବ କେମିତି ? ବଡ଼ ବିପଦ ହୋଇ ବସି ପଡ଼ିଲା । ଭାଇମାନେ ଆସିଲେ । ସବୁ ଶୁଣିଲେ । କହିଲେ ରାତି ପାହୁ, ଦେଖିବା ।

ତା ଆରଦିନ ବଡ଼ି ଭୋରରୁ ଭାଇମାନେ ଉଠି ଦେଖିଲେ କୂଅରେ ଏଡ଼େ ମାଛଟାଏ ଖେଳୁଛି । ଜଣେ ଦି'ଜଣ ଭାଇ କୂଅରେ ରକ୍ତ ଟୋପାକ ପଡ଼ିଥିବାର ଦେଖିଥିଲେ । କହିଲେ, "ମଲା ! ଏ ଅସୁର ଆମ ଭଉଣୀକୁ ଆହୁରି ହଇରାଣ କରୁଛି । ରକ୍ତ ଟୋପାକରେ ମାଛ ହୋଇ ଯାଇଛି । ହଉ, ଦେଖିନବା" କହି କୂଅରେ ପଶିଲେ । ଗୋଟେ ବଡ଼ ସୁଁଉରି—ଆମର ଗୋରୁ ଗାଈଙ୍କ ଗୋବର ନେଇ ଯେ ଉଥିରେ ହଳିଆ ପକାଉ ନାହିଁ, ସେଇମିତି—ତା'ଠୁ ବଡ଼ଟାଏ କୂଅରେ ପକାଇଲେ । ସୁଁଉରୁ ବଡ଼ ବଡ଼ ଦଉଡ଼ି ବାନ୍ଧି ଦେଇଥାନ୍ତି । ତିନିଜଣ ମାଛ ମୁଣ୍ଡକୁ ପାଟିକି ଚିପି ଧଇଲେ । ସୁଁଉରିରେ ଥୋଇଲେ । ଆଉ ଚାରିଭାଇ ଦଉଡ଼ି ଧରି ଟାଣିଆଣିଲେ । ମାଛଟା କଅଁ କଅଁ ହଉଥାଏ । ତାକୁ ଶୁଖିଲାରେ ପକାଇଦେଇ ଭାଇମାନେ ଭାରି ହସଖୁସି ହେଲେ, "ହଉ, ହଉ, ଆଜିରୁ ଆମର ଭୋଜନ ହବ । କେଡ଼େ ସୁଆଦ ଲାଗିବ ।" ଭଉଣୀକୁ କହିଲେ, "ଯା' ମସଲା ବା'ଟେ ।"

ଝିଅମାନେ ମିଶି ମାଛକୁ କାଟିଲେ । କାତି ଛଡ଼ାଇ ଧୋଇ ଦେଲେ । ଲୁଣ ହଳଦୀ ଲଗାଇ ଦେଲେ । ଭଉଣୀଙ୍କ କହିଲେ, "ତୁ ଯା'କେ, ଯା'ନେ । କୂଅରୁ ପାଣି କାଢ଼ିବାରେ କିଛି ଅସୁବିଧା ହବନାହିଁ । ଆମେ ଟାଣିବୁ । ତୁ ଖାଇବୁ ଯେ, ମାଛ ଖାଇବୁ ନାହିଁ ।"

ମାଣିକ ସେଠୁ ରାନ୍ଧିଲା । ଭାତ ମାଛ ବେଶର, ତରକାରି କଲା । ମାଛ ଭଜିଲା । ମାଛ ଶାକର କଲା ।

"ଆଉ ମାଛ କାଞ୍ଜି ?"

"ନାଇଁ । ମାଛ କାଞ୍ଜି ହବ ଯେ, ବାସୀ ତୋରାଣି ନଥିଲା । କାଞ୍ଜି ହେଲାନାହିଁ । ଅଧନ ପକାଇଦେଲା । ପାଣି ନୋଟା ରଖିଲା । ଭାତ, ତରକାରି, ଭଜା, ବେଶର, ଶାକର ବାଢ଼ି ଦେଲା । ଝିଅମାନେ ଟ ଇସାର କାମକୁ ଗଲେ । ମାଣିକ କବାଟ କିଳିଦେଲା ନିଜେ ଖାଇବସିଲା । ଖାଇସାରି ଅଇଁଠା ଉଠାଇଲା । ମାଛ କଣ୍ଟାଟିଏ ହାତରେ ଫୋଡ଼ିହୋଇଗଲା । ଦେଠୁଲେ ମ.ଆ, ସେଇଠିତ ସେ ମୂର୍ଚ୍ଛାହୋଇ କାନ୍ଥକୁ ଆଉଜି ଗଲା ।

ମାଣିକ କାନ୍ଥକୁ ଆଉଜି ବସିଛି । ଆଉ କିଏ ନାହିଁ । ରଜା ଆସିଲେ ପାରଧିକୁ । ଖଣ୍ଡେ ଦୂରରେ ଗଛମୂଳେ ତମ୍ବୁ ନଘ କଲେ । ସୁନ୍ଦର ଏକ ମହଲା ଘର । କିଏ କୁଆଡ଼େ ଦିଶୁନାହାନ୍ତି । ପାଇକକୁ ହକାରି କହିଲେ, ଆରେ ଏ ! ଶୁଣ୍ ତ । ଏ ଯୋଉ ଘରଟି ଦିଶୁଛି, କିଏ ସେଠି ଅଛି ନାହିଁ କଅଣ ଜାଣୁ ?"

"ଆଜ୍ଞା ଜାଣେନା ।"

"ହ ଗୁଣ ଜଙ୍କ୍ରେ ହାଙ୍ଗରେ ଧରି ଯାଅ । ଦେଖ୍ ତ କଅଣ ହାଲ୍ ।" ଗୁମାସ୍ତା ପାଇକ ଗଲେ । ରଜାଙ୍କ ପାଖରେ ହାତିଘୋଡ଼ା ଧରି ଆଉମାନେ ରହିଲେ । ପାଇକ ଗୁମାସ୍ତା ଫେରି ଆସିଲେ । କହିଲେ, "ଆଜ୍ଞା, କିଏ କୁଆଡ଼େ ନାହିଁ । ଘର ଭିତରୁ ବନ୍ଦ ।" ରଜା କହିଲେ, "ହଉ ଚାଲ, ଦେଖିବା ।"

ରଜା ହାତି ଘୋଡ଼ା ପାଇକ ଗୁମାସ୍ତା ସବୁ ଗଲେ । ପାଚେରୀ ସେପାଖେ ସବୁ ରହିଲେ । ରଜା, ସାଆନ୍ତ କରଣ ଯେନି ଘର ଭିତରକୁ ଯିବାକୁ ବସିଲେ । ହେଲେ କବାଟ ବନ୍ଦ । ହୁକୁମ ଦେଲେ "କବାଟ ଭାଙ୍ଗି ଦିଅ ।" କବାଟ ଭାଙ୍ଗି ଦେଲେ ।

ରଜା କହିଲେ, 'ଭିତରେ ପଶି ଦେଖ, କଅଣ ଅଛି ।'

ଖଲଣ୍ଡିକ ଭିତରେ ପଶିଲେ । ଦେଖିଲେ ଝିଅଟିଏ ଜାନ୍ତୁକୁ ଆଉଜି ଶୋଇଛି । ରଜାଙ୍କ ପାଇକ ଯାଇ ଖବର ଦେଲା, "ମଣିମା ! ଶୁଣିମା ହୁଅନ୍ତୁ ! ଝିଅଟିଏ ମରା ଜାନ୍ତୁକୁ ଆଉଜି ପଡ଼ିଛି ।" ରଜା କହିଲେ, "ଦେଖ, ତା'ର କୋଉଠି କ'ଣ ହୋଇଛି ।" ତନ୍ନତନ୍ନ କରି ଦେଖିଲେ କୋଉଠି କିଛି ହୋଇନି । ରଜାଙ୍କୁ ଖବର ଦେଲା । ରଜା ନିଜେ ଆସିଲେ । ନିଜେ ଅଙ୍ଗ ପ୍ରତ୍ୟଙ୍ଗ ଦେଖିଲେ । ହାତ ଦେଖିଲେ । ଗୋଟା ହାତ ଶୁଖି ଯାଇଛି । ହାତରେ ମାଛ କଣ୍ଟାଟିଏ ପଶିଛି । କଣ୍ଟାଟିକୁ ରଜା ନିଜେ କାଢ଼ିଦେଲେ । ପିଲା ଉଠିଲା ! ବୁଢ଼ିଆ ରଜାଙ୍କ ! କଣ୍ଟାଟି ହାତରୁ ବେଣ୍ଟି ବାହାରିଛି, ସେତିକି ସୁନ୍ଦର ଲାବଣ୍ୟ-ମୟୀ ଝିଅଟି ରଜାଙ୍କୁ ଅନାଇଛି । ତା'ର ଜୀବନ ହୋଇଛି ସେ ଜାଣିପାରୁନାହିଁ । ଯେମିତି ସ୍ୱପ୍ନ ଦେଖୁଥିଲା, ନିଦରୁ ଉଠିଲା । ଏତେ ଲୋକଙ୍କ ଦେଖି ଲାଜ ହୋଇଗଲା । ରଜାଙ୍କୁ କହିଲା, "ତମେ ସବୁ କିଏ ? କାହିଁକି ଆସିଲ ? ମୋ ଭାଇମାନେ ଚାଲିଯାଆନ୍ତୁ । ମୁଁ ଏକୁଟିଆ ଥାଏ । ସେମାନେ ସଞ୍ଜକୁ ଫେରନ୍ତୁ ।"

ରଜା କହିଲେ, "ସେ କଥା ଆମେ ବୁଝିବା । ତମକୁ ମୋ ସହିତ ଯିବାକୁ ହେବ । ତୁମେ ମୋର ରାଣୀ ହେବ ।"

ମାଣିକ ତା ଭାଇମାନଙ୍କୁ ଖୋଜୁଥାଏ । ଭାଇମାନେ ଆସିଲେ । ରଜା ସବୁକଥା କହିଲେ । ଭାଇଏ ସବୁ ରାଜି ହୋଇଗଲେ । ରଜା ମାଣିକକୁ ନେଇ-ଗଲେ । ଭାଇମାନଙ୍କୁ ରାଜ୍ୟ ଖଣ୍ଡେ ଖଣ୍ଡେ ଦେଇ ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟରେ ରାଜା କରାଇଲେ । ମାଣିକ ରାଣୀ ହେଲା । ରଜା ରାଣୀ ସୁଖରେ କାଳ କଟାଇଲେ ।"

'ଯା' ମାନ ଖାଇବୁ ।'

"କାଲିକି ଆଉ ଗୋଟେ ଗପ କହିବ ମା' ।'

"ରାଧେକୃଷ୍ଣ !"



# ବୋଉକୁ ଖଣ୍ଡିଏ ଚିଠି

ବୋଉଲୋ,

ଚାରିମାସ ହେଲା ଚାଲିଗଲୁ ଏ ସଂସାରରୁ । କଏ ଅଉ ସବୁ ସ୍ମୃତିଚିହ୍ନ ମନେ ପକାଉଛି – ଭାଇର ଜନ୍ମଦିନ ପଡ଼ୁଛି ମାର୍ଗଶିର ମାସ ପ୍ରଥମେଇଁ ଯିବା ସ୍ୱର୍ଗ-ଦିନ, ଶନଦନୀ ଜନ୍ମଦିନ ପୁଷ୍ୟ ପୂର୍ଣ୍ଣିମା ଦିନ ! ସେଦିନ ମଣ୍ଡାପିଠା କରିଥିବୁ ସଞ୍ଜବେଳକୁ; ସକାଳ ଓଳିଆ ଭାତ, ଡାଲି, ଶାଗ ବା ସନ୍ତୁଳା କରି ଝିଲ୍ଲିପିଠା କରି ଭୋଗ କରିଥିବୁ ଷଠୀଦେବୀଙ୍କୁ । ଦୁର୍ଗା ଜନ୍ମଦିନ ମାଘମାସ ଶ୍ରୀପଞ୍ଚମୀ ଦିନ— ସେମିତି ଷଠୀଦେବୀଙ୍କ ପୂଜା ସକାଳ ଦଶଟାବେଳକୁ । ରଙ୍ଗମାଟିରେ ଗୋଲାକାର ମୁଣ୍ଡାଟିଏ ଲିପି, ଘର ଭିତରେ ମୁରୁଜରେ ଚିତା ପକେଇ ଦେଇ, ଧାନଗଣ୍ଡିଏ କୁମ୍ଭତଳେ ରଖି, ଅମ୍ବଡାଳଟିଏ ରଖି, ଧୂପ, ଦୀପ ଜାଳି, ହଳଦୀ-ଗୋଳା ଅରୁଆ ଚାଉଳ, ଦୁବ ବରକୋଳି ପତ୍ର ଛିଣ୍ଡାଇ, ଫୁଲ ପକାଇ, ପୁଅକୁ ପିଢ଼ାରେ ବସାଇ, ପାଦ-ଅର୍ଘ୍ୟ ମିଶି ବନ୍ଦାପନା ବିଧି ସାରି, ସାଇର ସାନବଡ଼ ପିଲାଙ୍କୁ ଭୋଗ ବାଣ୍ଟିଦେଇ, ପୁଅଝିଅଙ୍କୁ ଖୁଆଇସାରି କେତେବେଳେ ଖାଉଥିବୁ !

ବାଉନ ବର୍ଷ ପୂରିସାରି ତେପନ ଚାଲିଲାଣି । ସବୁ ଯେ ଆଖି ଆଗରେ ଦିଶିଯାଉଛି । ପାଞ୍ଚଟି ପିଲାଙ୍କୁ ଧରି କେତେ ଯେ କଷ୍ଟସହ୍ୟ ହେଉଥାଉ ! କେବେ ହେଲେ ତୋର ସାହା ଭରସା ନ ଥିଲା । କେମିତି ଯେ ଚଳାଉ ସେ ପରମେଶ୍ୱର ଜାଣନ୍ତି । ଦଦା ସବୁ କିଣି ଆଣି ପକାଇ ଦେଇ ଯା'ନ୍ତି । ମା'ଙ୍କୁ ତ ଷାଠିଏ ବର୍ଷ ବେଳୁ କିଛି କାମରେ ହାତ ଲଗାଇ ଦେଉ ନ ଥିଲୁ । ମା' ତୋ ସେବା ଛାଡ଼ି କୁଆଡ଼େ ଯିବାକୁ ଇଚ୍ଛା କରୁ ନ ଥିଲେ । ସାନବୋହୂ ହୋଇଥିଲୁ । ତୋ ସେବା ପାଇ ମା' କେତେ ତୋ ଉପରେ ସନ୍ତୋଷ ହଉଥିଲେ ।

ଗାନ୍ଧୀ ମଲା ବର୍ଷ ମା' ମରିଥିଲେ । କଅଣ ତାଙ୍କର ଏମିତି ଝାଡ଼ା ହେଲା ଯେ ତିନିଦିନ ତିନିରାତି ତୁ ଆଖି ପଲକ ପକାଉ ନ ଥିଲୁ । ମୁଁ ସେତେବେଳେ ଷୋଳବର୍ଷର ଝିଅ ତୋର । ତୋ ପାଖେ ପାଖେ ଥିଲି । ତୁ ମା'ଙ୍କ ସେବା କିମିତି କରୁଛୁ ମୁଁ ଦେଖିଛି । ସେତେବେଳେ ଦଦା କଳାହାଣ୍ଡିରେ ଥିଲେ ।

ଦଦାଙ୍କୁ ତ ତାଙ୍କ ଦେହାନ୍ତ ବେଳେ ଦେଖିପାରି ନ ଥିଲି । ତୁ ଯାହା ସେବା କରିଛୁ ତୋଠାରୁ ଶୁଣିଲି । ସେଦିନକବେଳକୁ [illegible] ମୋ ଗର୍ଭରେ—ମୁଁ ଆଉ ଯାଇପାରିଲି ନାହିଁ । ଯୋଉଦିନ ଟେଲିଗ୍ରାମ୍ [illegible] ବା'ଙ୍କ

ଯେଉଁଦିନ ପୁଅ ଜନ୍ମହେଲା ସେଦିନୁ ସେଦିନୁ । କିନ୍ତୁ ଯେତେବେଳେ ଖବୁଝିଲୁ ମୋର କଥା ।

ଏଥର ମଗୁଶିର ମାସ ଗଲା । ପୁଷ ପୁନେଇଁ ମଧ୍ୟ ଗଲା । ମାଘମାସ ଶ୍ରୀ ପଞ୍ଚମୀ ଗଲା । ଫଗୁଣ ମାସ ପ୍ରତିପଦ ବସନ୍ତର ଜନ୍ମଦିନ ଗଲା । ଅଛି ଶ୍ରାବଣ-ମାସ, ଶିବର ଜନ୍ମଦିନ ପଡ଼ିବ । ଆମେ ଭାଇଭଉଣୀଏ ତ ଏତେ ବଡ଼ ବଡ଼ ହେଲୁ । ତଥାପି ତୋ ଆଗରେ ସମସ୍ତେ ପିଲା ।

କେତେ ତୋ'କଥା ଭୁଲିବାକୁ ଚେଷ୍ଟାକଲେ ମଧ୍ୟ ଭୁଲିପାରୁନାହିଁ । ଏପରି ମୃତ୍ୟୁ କାହାକୁ ଘଟେ । କାର୍ତ୍ତିକ ମାସ ଗୁରୁବାର ଦିନ—ସେମିତି ସକାଳୁ ଉଠି ନିତ୍ୟକର୍ମ ସାରି, ନାତି ନାତୁଣୀ ଖାଇକରି ସ୍କୁଲକୁ ଗଲେ—ଲେଣ୍ଡ ପ୍ରତି-ଦିନପରି ପରିବାପତ୍ର ବନେଇଦେଇ, ବେଜିକୁ ରାନ୍ଧିବାକୁ ବରାଦ କରିସାରି, ଡାଣ୍ଡ ପାଖକୁ ଆସି ଗାଈକୁ ଖାଇବାକୁ ଦେଲୁ । ସାନପୁଅକୁ ତେଲ ଲଗାଇ ଗାଧୋଇଦେଲୁ । ନିଜେ ବାଉ କରକୁ ଗାଧୋଇ ଗଲୁ । ଓଡ଼ାଲୁଗା ପିନ୍ଧି ଠାକୁର ପୂଜାପାଇଁ ପାଣିରଖିଲୁ । ଓଡ଼ାଲୁଗା ବଦଳିବାକୁ ଯାଇ ପଡ଼ିଗଲୁ । ଅଚେତ ହେବା ପୂର୍ବରୁ କହିଦେଲୁ ଭଗବାନେ କାହିଁକି ଏତେ କଷ୍ଟ ଦଉଛ ? ଜୀବନଟା ନେଉନ କାହିଁକି ? ତା ପରେ ପରେ ଅଚେତ । ଆଉ କେବେ କେତେ ଡାକିଲେ ଶୁଣିଲୁ ନାହିଁ ।

ଶିବ ଶୁଣିଲା ଧନ୍ୟ ଧନ୍ୟ କଲା । ଏପରି ପୁଣ୍ୟବତୀ କିଏ ହବ—ସ୍ୱର୍ଗ-ଧାମ ଯାଉ ଦେଇ ଯାଉଛୁ ! ମାମୁଁଙ୍କୁ ଖବର ଗଲା । ମାମୁଁ ଆସିଲେ । ଅପା ଅପା ଡାକିଲେ—କିଛି ଶୁଣିଲୁ ? ବୋହୂମାନେ କାନ୍ଦି କାନ୍ଦି ଗାଧୋଇ ଦେଲେ । ନାତୁଣୀ ନାତିମାନେ ଖୁବ୍ ଢବଳ ହୋଇ କାନ୍ଦିଲେ । ବସ୍ତୁଟି ପାଗଳ ପରି ହୋଇଗଲା—ବୋହୂ ତୁ ମତେ ଗାଧୋଇ ଦେଲୁ, ମୁଁ ତୋର କିଛି କରିପାରି ନାହିଁ । ଶୀତଦିନ, ସନ୍ଧ୍ୟା ହୋଇଗଲା । ତଟେ ଝିଅ, ପୁଅ, ନାତିମାନେ ନେଇ-ଗଲେ ବଡ଼ାଙ୍କ ସମାଧି ପାଖକୁ । ତୋର ସବୁଭାମ ସରିଦେଲେ ।

ଏଣେ ମୁଁ ଭାବୁଛି—କୁମାରପୂର୍ଣ୍ଣିମାକୁ ତ ଆଉ ଟଙ୍କା ପଠେଇଛୁ—ସବୁଥର ଲେଖେ ବୋହୂ ଭଲ ଅଛୁ—ଏଥର କାହିଁକି ବୋଉ କିମିତି ଅଛୁ ଲେଖିଲା ନାହିଁ । ହୁଁ ଲେଖି ନଥିବ—ବୋଉ ଭଲଥିବ । ତେବେ ମୋ ମନ ହଉଥାଏ କୁମାରପୂର୍ଣ୍ଣିମାକୁ ପଠାଇଥିବା ଟଙ୍କାରେ ମୁଁ ଖର୍ଚ୍ଚ କରି ଦିବ, ତତେ ଦେଖିଆସିବ । ସ୍ୱାତବର୍ଷ ତତେ ଦେଖି ଆସିବାକୁ ଯାଏ । ଏଥର ଯିବ ଯିବ

ଭାବୁଛୁ—କେବଳ ଆଉ ସୁବିଧା ହେଉପାରୁନାହିଁ—ପିଲାମାନଙ୍କ ଜଞ୍ଜାଳ ନେଇ ବ୍ୟସ୍ତ—ହଁ କାର୍ତ୍ତିକ ମାସରେ ଯିବ ନିଶ୍ଚେ ।

ତୁ ଇନ୍ଦ୍ରଧାମ ଛାଡ଼ିବା ପୂର୍ବରୁ ମୁଁ ଦିନେ ରାତିରେ ସ୍ୱପ୍ନ ଦେଖୁଛି—ଦାଦା ଯୋଉ ସରକାରୀ ଭ୍ୟାନ୍‌ଟିରେ ଗସ୍ତରେ ଯା'ନ୍ତି—ସେ ଗାଡ଼ିଟିରେ ଦାଦା ଆଉ ପିଲାମାନେ ବସିଚନ୍ତି—ତୁ ବସିବାକୁ ଯାଉଚୁ—ମୁଁ ତଳେ ଘର ଭିତରୁ ଦେଖୁଚି—ଅରୁଣକୁ ମାଗୁଛି—ମତେ ଗୋଟେ ଭଲ ଶାଢ଼ି ଦେ—ମୁଁ ପିନ୍ଧିବି, ଯିବି—ସେ ମୋ ପାଖରେ ଠିଆ ହୋଇଛି । ବାଣ୍ଡ ଦୁଆରେ ତୋ ଜୁଇଁ ଠିଆହୋଇଛନ୍ତି, ମଟର ବାଟ ଓଗାଳିଲା ପରି । ମୁଁ ମନେ ମନେ ବିରକ୍ତ ହେଉଛି, ମତେ କାହିଁକି ଝିଅ ଶାଢ଼ି ଖଣ୍ଡେ ଦେଉନି ପିନ୍ଧିବାକୁ, ଇଏ କାହିଁକି ବାଟ ଛାଡୁନାହାନ୍ତି ? ଦେଖୁ ଦେଖୁ ତୁ ଦାଦାଙ୍କ ସହିତ ଚାଲିଯାଉଛୁ । ତୋର ଚାଳିଶି ବୟାଳିଶି ବର୍ଷର ରୂପ, ଦାଦାଙ୍କ ରୂପ ମୁଁ ସ୍ପଷ୍ଟ ଦେଖି ପାରୁଛି । ନିଦ ଭାଙ୍ଗିଗଲା । ଭାବି ପାରି ନ ଥିଲି—ଏମିତି ତୁ ଚାଲିଯିବୁ, କହି ହେଉନି ।

ଚିଠିଖଣ୍ଡେ ଛାପାହୋଇ ପାଞ୍ଚଦିନରେ ପହଞ୍ଚିଲା । ଖବର କାଗଜ ଆଣିବାକୁ ଯାଇ ଚିଠିଖଣ୍ଡିକ ବି ରଖିଲି । ଝିଅ କଲେଜରୁ ଏ ପର୍ଯ୍ୟନ୍ତ ଆସିନାହିଁ ବୋଲି ବାଣ୍ଡକୁ ଅନାଇବାକୁ ଗଲି । ପରେ ଖବର କାଗଜ ଦିଖଣ୍ଡି ଭିତରୁ ଚିଠିଟି ଦେଖିଲି । ପଢ଼ିଦେଇ କାଠ ହୋଇଗଲି—ତାପରେ ପାଟିକରି କାନ୍ଦିଲି—ବୋଉଲୋ ବୋଉଲୋ ମୋ ବୋଉ ! ଚିଠିକୁ ଧରିଛି । ଝିଅ କଲେଜରୁ ଆସିଗଲାଣି । ପୁଅ ଶୋଇଥିଲା—ଉଠିପଡ଼ି କିଛି ବୁଝି ପାରୁନାହିଁ—ବୋଉର କଅଣ ହେଲା । ଏ ବୋଉ କଅଣ ହେଲାଲୋ କହୁ ମୁଣ୍ଡକ ଆଉଜେଇ ଧଇଲା ।

ତଳେ ମୁଁ କେତେ ଖୋଜୁଛି— ଅଉ ଏ ଜନ୍ମରେ ନାହିଁ । ମୋ' ଭୁନ, ମୋ' ଭୁନ ହେଉଥିଲୁ । ଦାଦା କହୁଥିଲେ ପୁଅ ବାହା ହେଇଗଲେ ଗଲା—ଝିଅ ସବୁଦିନେ ଜୀବନସାରା ଭାଳୁଥିବ ।

ବିନୋଦିନୀର ଝିଅ ବାହାଘର ହେଲା ରାଉରକେଲାରେ । ପୁଅଝିଅ ଆମେ ଦିହେଁ ଯାଇଥିଲୁ । ଦିନ କହୁଥିଲା—ଅପାଲୋ, ଆରଥରର କେମିତି ବାହାଘର ହେବ—ଦିନରାତି ନିଦ ନ ଥିଲା । ବୋଉ ମଧ୍ୟ କେତେ ଚିନ୍ତା କରୁଥିଲା । ଜୀଅନ୍ତାରେ ଯାହା କରୁଥିଲା ଏଇନା କୋଉଠି ଦେଖ... ଏମିତି

କରୁଛୁ । ମୁଁ କହୁଛି—ସତଲେ. ଦିନ—ବାର ତେରବର୍ଷ ହେଲା ପଡ଼ିଅଖଣ୍ଡେ ପଡ଼ିଥିଲା, ବୋଉ ଅରେ ବୁଲି ଦେଖି—ଆସିଥିଲା, କହିଥିଲା—ହଁ, ଭଲ ହେବେ ହବ । ଆମେ ତ ଗ୍ରହପାଖ ନ ଥିଲୁ—ସେଇଟା ଆମ ଆୟତ୍ତରେ ରହିବ କମିତ—ଏଇ ମାସରେ କମିତ ଗ୍ରହଙ୍କରେ ପୂନାଦ ପଡ଼ିଗଲା—କୂଅଟେ ଖୋଲାହେଇଗଲା—ହୁ ହୁ କରି ସେଠିକି ଜାମ ହୋଇଗଲା । ଶିବ କଲ୍ୟାଣମୟୀ ବୋଉ ଆମର—ଜୀବନ୍ତରେ ଯାହା କରୁଥିଲା—ସଂସାରରୁ ଗଲାପରେ ମଧ୍ୟ ଶୁଭଦୃଷ୍ଟିରେ ଚାହୁଁଛି ବୋଲି ଆମେ ବିଶ୍ୱାସ କରୁଛୁ ।

। ଇତି ।

କୁନି

# କଉଡ଼ି

ଦଶବରଷର ଝିଅ ପ୍ରମୀଳା ଘର ଓଳାଉଥିଲା । କଉଡ଼ିଟିଏ ପାଇଲା । ତାକୁ ବାଁ ହାତରେ ଘୋଟାଇ ଧରିଲା । ବାପା ତାର ଦେଖୁଥିଲେ ଠିଆହୋଇ । ବୋଉ ବାପାଙ୍କ ପାଖରେ ଠିଆ ହୋଇଥିଲେ । ବାପା କହିଲେ, "ଦେଖମ ! ଝିଅ ମୋର ଘର କରିବ । କଉଡ଼ିଟି ସାଉଁଟି ନେଲା ।" ବୋଉ କହିଲେ, "ହଁ, ତୁମପରି ବରଟି ତାର ହଳଦାରିଆ ହୋଇଥ ଏନା, ଘର କରିବ ।" ପଚିଶ୍‌କଣ ବର୍ଷ ତଳ କଥା । ହୋଇପରି ଆଖି ଆଗରେ ନାଚ ଯାଉଛି, କର୍ଣ୍ଣକୁହରରେ ବାଜ ଯାଉଛି ।

ପ୍ରମୀଳା ବଡ଼ ହେଲା । ତାର ବାହାଘର ହେଲା । ତା ସ୍ୱାମୀ ଉଚ୍ଚ ଶିକ୍ଷିତ । ଚାକିରି ଜୀବନରେ ବହୁତ ଜାଗା ବଦଳି । ଏପାଖ ସେପାଖ ହୋଇ ପିଲାମାନଙ୍କୁ ଧରି ସମ୍ବଲପୁର ପାଖ ବରଗଡ଼କୁ ଗଲେ । ବହୁତ ଅସୁବିଧା ସେଠି । ପାଣି ନାହିଁ । ବଡ଼ ବଡ଼ ମଶା । ପାଇଖାନା କଚ୍ଚା । ଗାଉଁଆ ପାଣି ଆଣି ଦିଏ କୂଅରୁ । ପାଣିରେ ପୋକ । ଛଣାହୋଇ ବ୍ୟବହାର ହୁଏ । ପିଲାଙ୍କ ସ୍କୁଲ ଦୂର । ପରିବାପତ୍ର ବହୁତ ଦରଦାମ । ପାଖଆଖ ସାଇ ମଡ଼ଣା କିଏ ନାହାନ୍ତି ।

ନୂଆକରି ଯାଇଥିବାରୁ ବହୁତ ଅସୁବିଧା ଲାଗେ । ତେବେ ଚଳି ଯାଉଥିଲା । ଦିନେ ରାତିରେ ଚୋର ଆସି ପଶିଲା ଘର ଭିତରେ । ବାହାର ସୁଟକେଶ ଖୋଲି ଦେଇଥିଲା ଜାଗା । ଜ୍ୱର ବାହୁଲାରେ ସାନପୁଅ ଚମକି ପଡ଼ି, "ବାପା, ବାପା, ଚୋର" ଚିତ୍କାର କଲା । ଉଠି ଦେଖିଲେ ଚୋର କୁଆଡ଼େ ଚାଲିଗଲାଣି । ବାରଣ୍ଡାରେ ହାଣ୍ଡିହାର ଲୁଗାମାନେ କଚରି ମିଚରି ହଉଥାନ୍ତି । କି ବ୍ୟବସ୍ଥା ! ଛ' ମାସରେ ପାଣିର ବ୍ୟବସ୍ଥା କରାଗଲା । ଦେଢ଼ ଦେଢ଼ଶ ଫୁଟ ଖୋଳାହୋଇ ଦି ଦିଟା ନଳକୂଅ ବସିଲା । ଅକମଁଶିଳା ପଥର ଭିତରୁ ଭଲ ପାଣି ହେଲା ।

ଝରକାଦନକୁ ଘର ସାମନା ଅଧଏକର ବ୍ୟାପୀ ବଗିଚା ପଥର ସ୍ତୂପଗଣ୍ଡା ତାତିଗଲେ ଘରଭିତର ଜଳଗଲା ଭଳି ଲାଗେ । ଖରାପଣ ଗରମ । ପ୍ରମୀଳା ସହିପାରନ୍ତିନି ଏ ଗରମ । ମହାବୀର ବୋଲି ପିଅନଟିଏ । ସେ ଘରର କାମ-ଦାମରେ ସାହାଯ୍ୟ କରେ । ସ୍ୱାମୀଙ୍କୁ କହି ପ୍ରମୀଳା କିଛି ଦୂରରେ ଦି ବଖରା ସ୍ନାନଘର କରେଇ ଦେଇଥାନ୍ତି । ସେଇଠି ମହାବୀର ଓ ତା ବାପା ରହନ୍ତି ।

ମହାବୀରର ବାପା ବହୁତ ବଡ଼ ମଣିଷଟାଏ । ଘର ସାମନାରେ ବନ୍ଧୁକଟେ ଧରି ଖଟିଆ ଉପରେ ପଡ଼ିଥାଏ । ମଝିରେ ମଝିରେ ଚା’ ପାଇଁ ମହାବୀରକୁ ଡାକ ପକାଏ । ମହାବୀର ଶୁଣିଲେ କି ଜବାବ ନ ଦେଲେ ବୁଢ଼ା ଚାଲିଆସେ । ମହାବୀର ବିରକ୍ତ ହୁଏ । କହେ, ଚାଲେ । ଆଜ୍ଞେ କେବେ ଆସୁଛୁ ? “ପ୍ରମୀଳା କୁହନ୍ତି, ଆରେ କଅଣ ମହାବୀର ? ବାପା କାହିଁକି ଡାକୁଛି ?” ପ୍ରମୀଳା ଜାଣନ୍ତି ସିଏ କ୍ଷୀର ମାଗୁଛି ମହାବୀରକୁ । ପରେ ତା ପାଇଁ ପଠାଇ ଦିଅନ୍ତି ମହାବୀର ହାତରେ । ଡାକପକାଇ ବୁଢ଼ା ପୁଣି ଖଟରେ ପଡ଼ିରହେ, ବନ୍ଧୁକ ଧରି ଅଶୀର ବର୍ଷରୁ ବେଶି ହବ ବୁଢ଼ାକୁ । ଡେଙ୍ଗା ଚଉଡ଼ା । ଶ୍ୟାମଳ ରଙ୍ଗ । ପିଠିଟା ଅଳ୍ପ ନଇଁଥାଏ, ମାତ୍ର ସିଧା ଚାଲେ ।

ଛଅଟାବେଳକୁ ପ୍ରମୀଳା ବୁଲି ଯାଆନ୍ତି । ଦିନେ ଦିନେ ଦେଖନ୍ତି ବୁଢ଼ା ଇଟା ରଖି କାଠଚୁଲି ଜଳାଇ ଖେଚେଡ଼ି ବସେଇଥାଏ । ଡାଲି ପରିଜ-ଆଏ କି ଭାତ ରାନ୍ଧୁଥାଏ । “ଏତେବେଳୁ ରାନ୍ଧିଲଣି ?” ପ୍ରମୀଳା ପଚାରେ ।

“ହଁ ମା, ମହାବୀର ଆସିଲେ ଖାଇବ ।”

କେତେଦିନକେ ଜଣେ ପଡ଼ୋଶୀ ଆସିଲେ । ଦିନେ ଦିନେ ସେ ବୁଢ଼ା ଉପରେ ଖପା ହୁଅନ୍ତି ! କହନ୍ତି, “ଏ ବୁଢ଼ା ବଡ଼ ଲୋଭୀ ।” ବୁଢ଼ାର ସ୍ୱର ଭାରି । ସେ ଲଢ଼ୁଆ ଥିଲା । ଲୋକମାନେ ତାର ବିରୋଧୀ ହେଲେ । ତା ଘର ଜାଳିଦେଲେ । ତା ପରଠାରୁ ସେ ଘରଛାଡ଼ି ପୁଅ ପାଖକୁ ଆସିଲା । ସାନପୁଅ ମହାବୀର । ବାପାକୁ ବହୁତ ଭଲପାଏ ।

କିଛିଦିନ ପରେ ମହାବୀର ମା ଆସିଲା । ବାପା ମା’ ଉଭୟେ ରହିଲେ । ମା’ ତା’ର ଗୋରା । ନାଲିକନା ପିନ୍ଧିଥାଏ । ତା’ଦେହକୁ ସୁନ୍ଦର ମାନୁଥାଏ । ପ୍ରମୀଳା ପାଖକୁ ଖରାବେଳଆ ଚାଲି ଆସେ । ବସେ ଦୁଃଖସୁଖ କହେ । ଗରମ ତଡ଼ତଡ଼ରେ ହରଡ଼ ଭାଜେ, ମୁଗ ଭାଜେ, ସଞ୍ଜଯାଏ ବସେ । ଚାଲିଯାଏ ତା’ ଘର କାମକୁ । ପ୍ରମୀଳା ପିଲମାନେ ଗାଧୋଇ ଯାଆନ୍ତି ତା ସହିତ ପୋଖରୀକୁ, ଛୁଟି ଦିନରେ । ମହାବୀର ମା ପିଲମାନଙ୍କୁ ଭଲପାଏ ।

ଦିନେ ପ୍ରମୀଳା ସାନ ଭଉଣୀ, ତା ସ୍ୱାମୀ, ପିଲମାନେ ଆସିଲେ । ବୁଢ଼ାକୁ ଦେଖି ପ୍ରତିମା କହିଲା, “ଅପା ମ ! ଚାଲେ ସେ ବୁଢ଼ା ପାଖକୁ ।” ପ୍ରମୀଳା [illegible] ମ ସିଅଡ଼େ ଯିବା ? “ଆମ ବାପା ପରି ଲାଗୁଛି ।”

ଦୁ' ଭଉଣୀ ଗଲେ, ବୁଢାର ଅଗଣାକୁ । ବୁଢ଼ା ଖଟିଆରୁ ଉଠି ନମସ୍କାର ହେଲ । ପ୍ରଥମା କହିଲା, "ଆରେ ତୁମେ ବୁଢ଼ାଲୋକ । ଆମକୁ କଅଣ ନମସ୍କାର କରୁଛ ?"

"ନା, ମା', ତୁମେ ବଡ଼ଲୋକ ।"

"ନା' ନା', ତୁମେ ଆମ ବାପା ପରି । ଆମ ବାପା ଥିଲେ, ଚାଲି-ଗଲେ ।"

"ହଁ, ମା' । ତୁମର ଦୁଃଖ କଅଣ ? ବଡ଼ ବଡ଼ ଲୋକଙ୍କ ହାତ ଧରିକି ଚାଲିଗଲେ । ବାପା କଅଣ ସବୁଦିନେ ଥାଆନ୍ତି କି ମା' ?"

ଦୁ ଭଉଣୀ ଆସିଲେ ବୁଢ଼ାଠୁଁ ସାନ୍ତ୍ୱନା ପାଇ ।

ପୁଣି ବଦଳି ହେଇ ଆସିବେ ଅନ୍ୟ ଜାଗାକୁ । ମହାବୀର ମା' କହେ, "ମା' ଗୋ, ଲୁଗା ଖଣ୍ଡେ ଦେଇଥିବ ପିନ୍ଧିବି । ଖାଇଥିବା ଯାକେ ମନେ ପକାଉଥିବି ।" ପ୍ରମୀଳା ସମ୍ବଲପୁରୀ ଲୁଗା ଖଣ୍ଡେ ଦେଇଥିଲେ ବୁଢ଼ୀକୁ ।

ଆସିବାକୁ ବାହାରିଲେ । ସକାଳ ସୂର୍ଯ୍ୟ ଉଇଁ ଆସୁଥାନ୍ତି । ଦ'କରେ କଲେଜ ପିଲାମାନେ ଦ'ଧାଡ଼ି ଠିଆ ହେଇଛନ୍ତି । ମହାବୀର ଠିଆ ହେଇଛି । ବୁଢ଼ା ସୂର୍ଯ୍ୟଙ୍କୁ ମୁହଁକରି ଫୁଲ ଅଞ୍ଜୁଳାଏ ଧରି ଠିଆହେଇଛି । ସମସ୍ତେ ସେ ଜାଗା ଛାଡ଼ିଲେ । ବୁଢ଼ୀ ସ୍ଥଳପଦ୍ମ ଅଜାଇଥିଲା । ବୋଉ ବାପା ଏମିତି ଘର ଜଗି ନଥିଲେ । ନଁ ପ୍ରମୀଳା କହୁଛନ୍ତି ।



# ଉରୁଉଳ ବାସ

ଦେଖୁ ଦେଖୁ ବେଲ ଗଛଟିରୁ ସବୁ ପତ୍ର ଅଣ୍ଡା ହୋଇଯାଏ । ଅଗଣା ସାରା ଶୁଖିଲା ପତ୍ର ଗଦା ହୋଇଯାଏ । ଶୁଖିଲା ପତ୍ରଗୁଡ଼ିକ, ପାଦ ପକାଇଲେ ମଚ ମଚ ହୁଅଥାଏ । ଗଛ ଏକଦମରେ ଶୂନ୍ ଅଣ୍ଡା । ନୂଆ ପତ୍ର କଅଁଳ ଆସେ । ଫୁଲ ହୁଏ । ମହକ ମଧୁର ବାସ୍ନା । ପୁଣି କଷି ଧରେ । ସେଠୁ କଷି ବଡ଼ ହୋଇ ବଡ଼ ବଡ଼ ବେଲରେ ଗଛଟି ଭରିଯାଏ । ପାଚ କରି ଡୁଲ୍ ଡାଲ ପଡ଼େ । ଆଜ୍ବେଷ୍ଟସ୍ ଛାତରେ ପଡ଼ି ଏଡ଼େ ଶବ୍ଦ ହୁଏ ଯେ ଚମକ ଯାଉ ।

ଏ ଣବର୍ଷ ରହଣି ଭିତରେ ବେଲଗଛଟି ପୁରା ସାଥି ହୋଇ ଯାଇଛୁ । ଏକୁଟିଆ ଥିଲେ ବା କିଏ ଥିଲେ ହେଲେ ବେଲ ଗଛଟିକୁ ଅନାଇ ରହିଲେ ମନରେ ଖୁବ୍ ଆନନ୍ଦ ଭରିଉଠେ । ମୁଁ ଯେମିତି ତପସ୍ୱିନୀ । ଏ ତପସ୍ୟାର ଫଳ କ'ଣ ପାଇପାରେ ପ୍ରଭୁ ? ଶୁଣିଛୁ, ବେଲଗଛର ମୂଳେ ବ୍ରହ୍ମା, ମଧ୍ୟେ ବିଷ୍ଣୁ, ଅଗ୍ରେ ମହେଶ୍ୱର । ହେ ଉମାପତି । ତାରିଦିଅ ଭବସାଗର ।

ସତି ଅନସୂୟାଙ୍କ ଡାକରେ ସବୁ ଆସନ ଟଳିଥିଲା । ପ୍ରଭୁ ? ତେବେ, ତମକୁ ଶୁଭୁଛୁ କିଛି । ସ୍ୱାମୀ ଆଉ ପୁଅପୁଝୀଙ୍କ ପାଇଁ କେତେ ଯେ ପ୍ରାର୍ଥନା କରୁଛୁ । ଘୋର ସଂସାରରେ କି କଷ୍ଟ । କେତେ ଯାତନା । କେତେ ସନ୍ଦେହ । ଚାଲିଯାଆନ୍ତି ସେଇ ପିଲାଦିନର ଧୂଳି ଖେଳକୁ । ଟିକି ଟିକି କୁନିଛୁଆ ଖେଳକୁ । ନାହିଁ ସେ ଧୂଳିଖେଳ । ନାହାନ୍ତି ଦଦା ବୋଉ । ନାହାନ୍ତି ସେ ସାଙ୍ଗସାଥୀ । କେଉଁ ଜନ୍ମର ତପସ୍ୟାରୁ ମଳୟ ମାଧବଙ୍କୁ ଆଶ୍ରୟ ନେଲି ଯେ ସେ ଯାଇ କୋଉଠି, ମୁଁ ଆସି କୋଉଠି । ପିଲା ମୋର କୋଉଠି । ସବୁ ଅଛୁ, କିଛୁ ନାହିଁ ।

ସକାଳୁ ଉଠି ବେଲ ଗଛଟିକୁ ଦେଖିଲେ ଅପୂର୍ବ ଶିହରଣ ଆସେ । ଖୁବ୍ ଆନନ୍ଦ ହୁଏ ମନ । ଏ ଘରକୁ ନୂଆକରି ଆସିବା ପରେ ପଡ଼ିଥିଲା ବୈଶାଖ ମାସ ପଣା ସଂକ୍ରାନ୍ତି । ସେ ଦିନ ପାଣି ବୁନ୍ଦେ ବି ନ ଥିଲା । ଲକ୍ଷ୍ମୀ ନୃସିଂହଙ୍କୁ ନଡ଼ିଆଟିଏ ଭାଙ୍ଗି ସେହି ପାଣିରେ ଗାଧୋଇ ଦେଲି । ହୁ ହୁ ଖରାରେ ଅନାଇ ରହିଥିଲି ବେଲ ଗଛଟିକୁ । ବହୁତ ବେଲ, ଗଛରେ ଥିଲା । ପାଚିଲା ମିଠା ମିଠା ବେଲ । ପଣା ସଂକ୍ରାନ୍ତି । ପାଣି ତ ନାହିଁ, ପଣା କରିବି କେମିତି ? ପାଣିବାଲାକୁ କହି ପାଣି ଆସିଲା, ଟାଙ୍କିରେ ପାଣି ପଶିଲା । ଘର ପାଞ୍ଚଟା ବେଲ ଧରି ପଣା କଲି । ସନ୍ତୁ- ଷ୍ଟେ... ପଣା ପିଇ ଆତ୍ମତୃପ୍ତି ଲାଭକଲେ ।

ବେଲଗଛ ପାଖକୁ ଚଉଁରାଟିଏ । ତୁଳସୀ ଗଛଟି ବଡ଼ ଝଙ୍କାଳିଆ ହୋଇଥାଏ । ତିନି ଚାରି ହାତ ଦୂରକୁ ମନ୍ଦାର ଗଛଟି । ଚାଟଣ୍ଡେ ହବ ଗଛଟି ହୋଇଥିଲା, ଆଣି ଲଗାଇଥିଲେ । ସେ ଦଶହାତ ହବ ବଢ଼ିଯାଇ ଫୁଲ ଆଉ କଢ଼ରେ ଭରପୂର ହୋଇଯାଏ । ସକାଳୁ ଉଠି ଓପର ମହଲରୁ ତଳକୁ ଦେଖିଲା ବେଳକୁ ଲାଲ ଟୁକୁଟୁକୁ କଢ଼ଗୁଡ଼ିକ ଫୁଟି ଫୁଟି ଆସୁଥାଏ । ମନ୍ଦାର ମୂଳକୁ ଟିକିଏ ଗୁଡ଼ ପାଣିକୁଣ୍ଡ । ଆସିଲାବେଳେ କୁଣ୍ଡଟି ଝଣ୍ଡିଆ ଖାବରା ହୋଇ ପଡ଼ିଥିଲା । କେତେ କୁହାବୋଲାରେ ମରାମତି କରେଇଥିଲେ ।

ମଲସ୍ତୁ ଖୁବ୍ କମ୍ ବୟସରେ କେନ୍ଦ୍ର ସରକାରଙ୍କର ପ୍ରଥମ ଶ୍ରେଣୀ ଚାକିରିଆ ହୋଇ ଯାଇ, ବର୍ଷକ ପରେ ମତେ ନବାକୁ ଆସିଥିଲେ । ଅଠେଇଶ ବର୍ଷ ତଳେ । ଯିବା ପୂର୍ବରୁ ଶାଶୁ ମୋର ମୁଣ୍ଡ ବୁଲାଇ ଦେଇ କହିଥିଲେ, "ପରଦେଶୀ ହବ । ତରୁତଳେ ବାସ କେ ମାଆ, ଜଗତ୍ତ ବିଳାସ । ଏଇ ଘରେ ତରୁତଳ ବାସ, ଜଗତ୍ତ ବିଳାସ—ଏକାଠେଇଁ ଉଭୟ ଅଛି ।

ପରଶୁଦିନ ରାତିରେ ସ୍ୱପ୍ନ ଦେଖିଲି ବାବୁକୁ ମୋର । ଦୁଇ ଭାଇଙ୍କ ମଝିରେ ଠିଆ ହୋଇଛି । କହୁଛି, ହଉ ଦେଖା ବୋଉକୁ । ସେ ଯାହା କହୁଛି କର । ମତେ କହୁଛି, 'ତୁ କାନ୍ଦୁ କାହିଁକି' ? ଠିଆ ହଉଛି, ପୁଣି ଟିକେ ଖଟ ଉପରେ ଶୋଇ ପଡ଼ୁଛି । ଉଠି ଠିଆହୋଇ ପାଣି ପିଉଛି । ନିଦ ଭାଙ୍ଗିଗଲା-ଓ ନମଃ ଶିବାୟ, ନମଃ ଶିବାୟ, ନମଃ ଶିବାୟ କହିଲି । ପାହାନ୍ତାରୁ ବ୍ରହ୍ମା ବିଷ୍ଣୁ-ମହେଶ୍ୱର ସ୍ୱରୂପ ବେଲ ଗଛକୁ ପ୍ରଣାମ କଲି । ଚନ୍ଦନ ଶିବଭକ୍ତ । ସେ ହଷ୍ଟେଲରେ ରହି ପଢ଼ୁଥିଲାବେଳେ ଶିବଙ୍କ ଫଟୋଟିଏ ରଖିଥିଲା । ମତେ ଦେଇଥିଲା । ମୁଁ ଫୁଲ ଚନ୍ଦନ ଦେଇ ପୂଜା କରୁଛି ।

ବାବୁ ମୋର ଏତେ ଦିନକେ ଘରୁ ଫେରିଲା । ତିନି ବର୍ଷ ତିନି ମାସ ପରେ । ଆସିବ ଆସିବ ଭାବୁଛି । ଜାଣି ପୂଜା ବୁଲିଗଲା ଭଉଣୀ ପୁଅର ବାହାଘରକୁ । ଭଉଣୀ ଅନାଇଁ ରହିଥିଲା । ଆସିବ ବୋଲି ଆସିପାରୁ ନାହିଁ । ମାର୍ଗଶୀର ମାସ ଶେଷପାଳି ଗୁରୁବାର । ନୂଆବୋଉ ଅଟକାଇ ଦେଲେ । ସେଦିନ ସନ୍ଧ୍ୟା-ବେଳେ ପୂଜା ଠାକୁରଙ୍କ ପାଖେ ବସିଛି, ବାଁ କଡ଼ ହାତଟା ଡେଇଁଲା । ମୁଁ ଶୁଭ ମନାଥିଲି—ବାବୁ ମୋର ଆସୁଛି । ରାତି ତିନିଟା ବେଳକୁ ବାହାରକୁ ଉଠିଲି । ସମସ୍ତେ ଖୁବ୍ ଶୋଇଥାନ୍ତି ନିଦରେ । ହନୁମାନ ଚାଳିଶା ପଢ଼ିଗଲି । ଜାଣିପାରିଲି ପୁଅ କଷ୍ଟେ ଆସୁଛି । ସେତିକିବେଳେ ଉଡ଼ାଜାହାଜ ଶବ୍ଦ ଶୁଭିଲା । ମନ ବଡ଼ ଛଟପଟ ହେଲା । ଭଉଣୀ ମୋର ମୋ ପାଖରେ ଶୋଇଛି । ତା ଉପରେ ବିରକ୍ତ ଲାଗୁଥାଏ । କମିତି ଯିବ ଏଠୁ । କି ହଇରାଣ । କ'ଣ ଭାବିବ [illegible]ରୁ !

ବାପା ତାର ବରଷ ହେବେ । ସେଇଦନ ଗୃହଲକ୍ଷ୍ମୀ ତ ଭଉଣୀ, ପୁଅଙ୍କୁ ଧରି ସାନ ନୂଆବୋଉଙ୍କ ପାଖକୁ । କଅଣ ଯଥା ତଥା ଦୁଇଟା ଖାଇଦେଇ ମୁଁ ଶୋଇ ପଡ଼ିଲି ।

ପାହାନ୍ତାରୁ ନିଦ ଭାଙ୍ଗିଗଲା । ନୂଆବୋଉଙ୍କୁ କହିଲି, ଦେବୁକୁ ଉଠାଇ ଦିଅ । ଆମେ ଯିବୁ ପରା । ନୂଆବୋଉ କହିଲେ—ପଡ଼ିଶାଘରର ଝିଅ ଆସି କହିଲା, କିଏ ଫୋନ୍ କରିଥିଲେ—ବାବୁ ଆସି ପହଞ୍ଚିଛନ୍ତି କାଲି ଦିନ ଦଶଟାରେ । ସଙ୍ଗେ ସଙ୍ଗେ ଆମେ ବାହାରିଲୁ । ଟ୍ରେନ ଧରିଲୁ । ମନ ହେଉଥାଏ, ଘରେ କେମିତି ପହଞ୍ଚିବି । ଗାଡ଼ି ଟିକିଏ ଅଟକି ଗଲେ ବରଷ ଲାଗେ । ଦିନ ଏଗାରଟାରେ ଗାଡ଼ି ରହିଲା । ସାନପୁଅ ମୋର ଆସିଥାଏ ଷ୍ଟେସନ । ରିକ୍ସାଧରି ଆସିଲି । ତ ଭଉଣୀ ବସିଲୁ । ଘରକୁ ଆସିଲୁ । ବାବୁ ଆସି ବାରଣ୍ଡା କାଠକାଲି ଦୁଆର ପାଖରେ ଠିଆ ହେଇଥାଏ । ମୋ ସାନପୁଅ କହିଲା, "ହେଇଲେ ବୋଉ, ଭାଇ ଠିଆ ହୋଇଛନ୍ତି ।" ମତେ ଦୂରକୁ ଦିଶୁ ନଥାଏ । ମୁଁ କହିଲି, 'କାହିଁ' ?

ବେଲ ଗଛଟି ଦେଖେଇ ବାବୁ କହିଲା, "ଗଛଟି ବଡ଼ିଆ ହୋଇଛି ନା ? ବେଲ ଗଛ ଥିଲେ ଭଲ କହୁଛନ୍ତି । ବିଲାତରେ ବେଲଗଛ ନାହିଁ ।" ସାହାଯ୍ୟ-କାରୀ ପିଲାଟିଏ ଥିଲା । ତା ନାମ ଶିବ । ସେ ଖଟିଆ ପକେଇଦେଇ ବେଲ ମୂଳେ ଶୋଇଥାଏ । ବାବୁ ପୁଛିଆର କରେ—ମୁଣ୍ଡରେ ବେଲ ପଡ଼ିଯିବରେ ଶିବ । ଶିବ ଜବାବ ଦିଏ—ନାହିଁ ଆଜ୍ଞା, ମୁଣ୍ଡରେ ବେଲ ପଡ଼େ ନାହିଁ ।

ବାବୁ ମାସଟିଏ ରହି ଫେରଗଲା । ବିଲାତ ହେଇ ବିଭିନ୍ନ ଦେଶ ଦେଖି ଆମେରିକା ଯିବ । ସେ ଗଲାବେଳକୁ ବେଲ କଷା ଥାଏ । ପୁଣି ଦେଢ଼ ବରଷ ବାଦେ ଆସିବ । ମୁଁ ଦିନେ କହିଲି, 'ପୁଅ ଆସିବ' । ଇଏ କହିଲେ ପାଗଳ ନା କ'ଣ । ପୁଅ ଏବେ ଯାଇଛି । ଏବେ ଆସୁଛି ! ଦ ଦିନ ବାଦେ ଚିଠି ପାଇଲୁ ! ଖରା ଛୁଟିରେ ଦିଲ୍ଲୀରେ ପହଞ୍ଚିବାର ଚିଠି ଲେଖିଥିଲା—ଦିଲ୍ଲୀରେ ମୋର କାମ ଅଛି । ସଞ୍ଜପରେ କେବେ ଦିନେ ଯିବି । ଖରାବେଳେ ଶୋଇଛି, ଉଡ଼ାଜାହାଜ ଶବ୍ଦ ଶୁଭିଲା । ପୁଅ ନିଶ୍ଚେ ଏ ଉଡ଼ାଜାହାଜରେ ଆସୁଛି । ଠିକ୍ ଅଧଘଣ୍ଟା ପରେ ସାନପୁଅ କହିଲା, "ବୋଉ, ଉଠ । ଭାଇ ଆସିଲେଣି ।" ଧଡ଼ପଡ଼ ହୋଇ ଉଠିଲି । ବଡ଼ ବଡ଼ ଦୁଇଟା ବାକ୍ସଧରି ଓପର ମହଲକୁ ଆସିଲା । ବାପା ତାର ବଦଳିହେଇ ଯାଇଥାଆନ୍ତି । ସେଦିନ ଯିବାପାଇଁ ବାହାରି ଥିଲେ । ବସ୍ ଟିକଟ [illegible] କୁ ଦେଇଦେଲେ । ସେ ଦିନକ ରହିଲେ, କହିଲେ 'ଆଜି କ'ଣ [illegible] ।'

ସେଠିକି ବେଲକୁ ବେଲ ପାଚିଯାଏ । ବଡ଼ ବଡ଼ ହେଇଯାଏ । ହେଲ-ପଣା କରେ । ପୁଅ ପିଏ । ସମସ୍ତେ ପିଅନ୍ତି । ପୁଅ କହେ, ଏ ବେଲ ଗଛଟି ଖର ବଢ଼ିଆ ଲାଗୁଛି । ଖାଲି ଭଉଣୀମାନଙ୍କୁ କହେ, 'ବେଲଗଛ ମୂଳକୁ ଯାଅନା ! ମୁଣ୍ଡରେ ବେଲ ପଡ଼ିବ ।"

ମାସଟିଏ ରହି ପୁଅ ବାହାରିଲା ବିଦେଶ । ଆଙ୍କର ତ ବଦଳି ହୋଇ ଯାଉଛି । ଘର ଆମକୁ ଛାଡ଼ିବାକୁ ପଡ଼ିବ । ଆଉ କଣଟା ବଳାଯ ବାଯ ନାହିଁ । ଫୁଲ ଫଳ ନାହିଁ ।

# ବୋଉକୁ ଆଉ ଖଣ୍ଡିଏ ଚିଠି

ପୂଜନୀୟା ବୋଉ,

ଚିଠି ଖଣ୍ଡେ ଲେଖିଥିଲୁ । କିଏ ଆଉ ପଢ଼ି ଉତ୍ତର ଲେଖିବ ? ପ୍ରଥମେ ସମ୍ବୋଧନ 'ଅଦ୍ୟ ସୁଲକ୍ଷଣୀ ଝିଅ କୁନ,'—ତାପରେ ଅନେକ କଥା । ଏବେ କାହାର ଉତ୍ତର ପାଇବ ? ପୁଣି ଚିଠି ଲେଖିବାକୁ ପ୍ରସ୍ତୁତ ହେଇଯିବ । ନରଦେହେ ନାରାୟଣ । ତୁ ନାରାୟଣୀ ରୂପରେ ଏ ଚିଠି ପଢ଼ୁଛୁ । ଯେ ନାରୀ ପଢ଼ୁଛି, ତା ହୃଦୟ କୋମଳପ୍ରାଣ—ଖରାପାଇ ବରଫ ତରଳିଲାପରି ମାତୃହୃଦୟ ! ଆଖି ଛଳଛଳ ହେଇ ଯାଉଛି । ତତେ ଲେଖିବା ଚିଠି ମୁଁ ନିଜେ ନିଜେ ପଢ଼ିଯାଉଛି । ମନ ପଡ଼ଗଲେ ଲୁହ ଗଡ଼ି ଯାଉଛି । ସ୍ତ୍ରଶବର୍ଷ ତଳୁ, ହେଉ ହେଲ ତଳୁ ତୋ କଥା, ଦଦାଙ୍କ କଥା ମନେ ପଡ଼ୁଛି । କେତେ ଶୀଘ୍ର ହଜିଗଲ ସତେ । ଦଦା ଅନ୍ତେ ତୁ କହୁ, 'ତୋ ଦଦା କହନ୍ତି—କୁନ କାନ୍ଦିଲେ ତ ମୋ ଛାତି ଫାଟିଯାଉଛି । କୁନ ମୋର ପୁଅ, କୁନ ମୋର ଝିଅ । ତା ଲାଗି ମୋ ସଂସାର ।'' ତୋ'ର ସେକଥା ମନେ ପଡ଼ୁଛି । ତୁ, ଦଦା ଏତେ କରିଥିଲ, ମୁଁ ଯେ କଅଣ କରି ପାରିଲି ? ଦେଖି ମଧ୍ୟ ପାରିଲିନି ଦଦାଙ୍କୁ । ଭାବିଥିଲି ତୋର ଟିକିଏ ସେବା କରିପାରିବି, ତୁ ସେମିତି ଚାଲିଗଲୁ । ସେବା କରିଗଲୁ ସବୁରି, । ସେବା ନେଲୁନାହିଁ କାହାଠୁ । ଦଦାଙ୍କ ଅନ୍ତେ ତୁ ଦୁଃଖ କରୁଥିଲୁ—ତୁ ଆଗେ କାହିଁକି ନ ଗଲୁ । ସାଇପଡ଼ିଶା, ତୋ ସାଙ୍ଗ, ଭଉଣୀ, ଝିଅ ବୋହୂଏ କେତେ ବୁଝାଇଲେ—''ମା, ତମେ ଏ ସଂସାର ଚଳାଉଛ । ସେ ତ ସଂସାର ଚଳାଇବାକୁ ଅକ୍ଷମ ଥିଲେ, ସେଥିପାଇଁ ତମେ ରହିଲ । ତମେ ନହେଲେ ଚଳିପାରି ନଥାନ୍ତେ ତମ ପୁଅ ଝିଅ ।'' ମେଘ ଭଳି ଢାଙ୍କି ରହିଥିଲୁ । ଘରକୁ ଦ୍ୱାରବନ୍ଧ ଭଳି ଟାଣି ଥିଲୁ । ତୋଠାରୁ ଜନ୍ମ ହେଲେ ମଧ୍ୟ ତୋର କିଛି ଗୁଣକୁ ସମାନ ନୋହୁ ଆମେ । ଦୁହିତା—ଯେ ଦୁଇକୁଳକୁ ହିତା ଥିଲୁ । ତୋ ବୋଉ ମରିଥିଲା ତଲେ ପନ୍ଦରବର୍ଷ ବେଳେ । ସାନ ଭାଇଭଉଣୀଙ୍କର ମା'ଠୁ ଅଧିକ ହୋଇଥିଲୁ । ତୋ ବୋଉକଥା ଯେତେବେଳେ କହୁଥାଉ କାନ୍ଦି କାନ୍ଦି, ''ସାନଭାଇଟି ଦୁଇବର୍ଷର, ତା ଉପରଭଉଣୀ ସ୍ତ୍ରଶବର୍ଷର, ତା ଉପର ଭାଇ ଛ' ବର୍ଷର, ତା ଉପର ଭାଇ ଆଠବର୍ଷର, ତା ଉପର ଭଉଣୀ ବାର ବର୍ଷର । ଲୋକେ କହିଲେ ଜନ୍ତାକୁତରେ ନିଆଁ କୁଢ଼େଇ ଦେଇଗଲା ।'', ତାଙ୍କୁସବୁ ତୁ ଦୁଃଖକଷ୍ଟରେ ପାଳିଲୁ । ଶାଶୁଘରେ ଏନ୍ତେ [illegible]ର ସମସ୍ତେ ସନ୍ତୋଷ । ବଡ଼ ଜା'ମାନେ, ଝିଆରୀ ପୁରୁଷମାନେ, [illegible] ଲୋକେ ସମସ୍ତେ କହନ୍ତି—ଲକ୍ଷ୍ମୀ ।

ତୋର ଯେବେଠୁ ବଡ଼ ହେଲି ଅ ମୁଁ ସବୁକଥା, ପାଞ୍ଚବର୍ଷ ବେଳର କଥା ମନେ ପଡ଼ୁଛି । ସେ ଯାହା କର୍ମ କରିବାକୁ ଆସିଲେ, ଆଗେ ହାକର ଦେବେ । ଭୁ ଆଗ ଜଣିଲେ ଅନ୍ୟଆଡ଼େ ଯିବେ । ଥରେ ଧୋବଣୀ ଆସିଲା । ଭୁ ଘରର ଅନ୍ୟକାମରେ ବ୍ୟସ୍ତ ଅଛୁ । ଧୋବଣୀ କହିଲା, "ଏ ହାଆନ୍ତାଣୀ, ଫୁଲୁଛ କାହିଁକି ବା ! ତମେ ଅଟେଗ ଟଣ୍ଡେ ଲୁଗା ପକାଇଦେଲେ, ମୁଁ ଘରକୁ ଯିବି । ତମଠୁ ଲୁଗା ଆଗ ନେଲେ, ଯେତେ ଲୁଗା ବାଡ଼ଲେ, ଅଣ୍ଟାପିଠି ବଥା କରବନାହିଁ । ଭୁ ଆଣି ଲୁଗା ପକାଇଲୁ । ମୁଁ ତୋ ପାଖେ ଥିଲି । ଯେତେବେଳେ ପିଠା ତିଆରି କରୁ କନ୍ଦୁଣି, ପୁର, ଘିଅ ସମାନ ହୋଇଯିବ । ପୁର କନ୍ଦୁଣିକୁ ଠିକ୍ ହୋଇଥିବ । ଘିଅ ମଧ୍ୟ ପଲମରେ ଯାହା ଢାଳିଥିବୁ ପିଠା ଛଣା ସରିଲା ପରେ ଘିଅ ସରିଥିବ । ଛଣା ଘିଅ ବଳକା ନଥିବ । ଭୁ ହେଉଚି ବେଳେ କହୁ, "ଏମିତି ପିଠାକୁ ଘିଅ, କନ୍ଦୁଣି, ପୁର ସମାନ ହୋଇଗଲେ. ଯାହାର ହାତରେ ଏମିତି ହୁଏ, ତା ଧନ ଭଲରେ ସଣ୍ଠଯାଏ ।" ଯିଏ ଯାହା ପଗ୍ଭରିବ, କହିବୁ । କଏ କମିତି ମୁଣ୍ଡ କୁଣ୍ଡାଇବ, ବେଣୀ ବାନ୍ଧିବ, ଭୁ କରିବୁ । ଝିଅମାନେ ତୋ ସାଙ୍ଗପଣ ଥିବେ ପାଖରେ ସବୁବେଳେ । ମାଆଙ୍କ ଉପରେ ବହୁତ ଭଲପାଉଥିଲେ । ମାଆଙ୍କର ପୁଅ ବୋଲି ଉଭୟ ହୋଇଥିଲୁ । ଅକସ୍ମାତ୍ ହୃଦ୍‌ଘାତରେ ତାଙ୍କର ମୃତ୍ୟୁ ହୋଇଥିଲା । ବଡ଼ା କଳାହାଣ୍ଡିରେ—ଅନ୍ୟ ଯାଗାକୁ ଗସ୍ତରେ ଯାଇଥିଲେ । ସେ ରାତିରେ ଶୋଇଛନ୍ତି-ମାଆ ତାଙ୍କୁ ସ୍ୱପ୍ନରେ କହୁଲେ, "ଉଠ, ଉଠ, ଘରକୁ ଯା" । ବଡ଼ା ଆସି ଦେଖିଲେ ମା'ଙ୍କ ମୃତ୍ୟୁ ଖବର ନେଇ ଟେଲିଗ୍ରାମ୍ ପଡ଼ିଛି । ଆସିଲେ । ସକାଳ ବସ୍‌ରେ ବସିଲେ । ଧନ ଗୋଟାଏ ହୁଏ ପଗ୍ଭ, ଘରେ ପହଞ୍ଚିଲେ । ବସ୍‌ରୁ ଓହ୍ଲାଇ କାନ୍ଦ କାନ୍ଦ ଆସୁଥିଲେ । ଭୁ ସବୁ କରୁଥିଲୁ । ଦୁର୍ଗା କଛି କାମ ଭୁଲିଇଥିଲା । ଆଠବର୍ଷର ଦୁର୍ଗାଟି ମାତ୍ର । ସେମିତି ବଡ଼ାଙ୍କର ମୃତ୍ୟୁଖବର ଟେଲିଗ୍ରାମ୍ କରି ଜଣାଇଦେଲେ । ମାଘ ମାସ—ରାତିପାହିଲେ ମକର ସଂକ୍ରାନ୍ତି । ମୁଁ ଯିବାକୁ ଇଚ୍ଛାଥିଲେ ମଧ୍ୟ ସୁବିଧା ନଥିଲା । କୋଉଁ ତୋର ଆସାମ ଯାଇଥିଲେ ଉଡ଼ାଜାହାଜରେ । ଚିଠି ଲେଖିଥିଲେ ମତେ, କଲିକତାରୁ । ମୁଁ ବଡ଼ ବ୍ୟସ୍ତରେ ଥାଏ, ଭଲରେ ଯାଇ କମିତି ଭଲରେ ଫେରିବେ । ସେ ଆସାମରୁ ଫେରି ଚିଠି ପାଇଲେ—ଶଶୁରଙ୍କଠାରୁ । ବଡ଼ା ନାହାନ୍ତି । ପୁଅ ଜନ୍ମ ହୋଇଛି—କାଲିକାଲି । ମୁଁ ଏଣେ କମିତି ସନ୍ତୁଦେବକୁ କଟାଇଛି ରାତିସାରା । ପୁଅଟିଏ ଅଙ୍କ ମଝିରେ ଶୋଇଛି । ନିଦ ନାହିଁ । ସାରା ରାତି ଉଠୁଛି । ରୁମ୍‌ଟିରେ ବୁଲୁଛି, ବୁଲୁଛି, ପିଲାଙ୍କୁ ଦେଖୁଛି । ଆର ଦୁଇଟି ଘରେ ଗୋଟିକରେ ଦିଅର ବା, ତାଙ୍କ [illegible] ଧରି ଶୋଇଛନ୍ତି, ଆରପାଖଟିରେ ଶାଶୁଶଶୁର, ସାନନଣନ୍ଦ ମୋର ଦୁ [illegible]

ଅଣ୍ଟ ଛୋଟଇଛନ୍ତି । ଘୋର ଜ୍ୱରରେ ଶୋଇଛନ୍ତି । ଏଥର ସେଘରକୁ ଗଲ । ଧୀରେ ଧୀରେ ଗଲ । ଧୀରେ ଧୀରେ ଆସିଲ ମୋ ଝୁମ୍‌କୁ—ତାହାର ଜ୍ୱର ନ ଛାଡ଼ୁ । କୋଠିଘରେ ଶୋଇଛନ୍ତି, ଗୋଟିଏ ଶାଶୂ ମୋର । ତେୟାନବେ ବର୍ଷର ବୁଢ଼ୀ । ଦଦା ମୋର ବା'ସ୍ତରୀ ବର୍ଷରେ ଗଲେ । ସେତେବେଳେ ମଧ୍ୟ ଓକାଦ୍ଧକା ହେମ୍ପସନ—ଖଲ୍ଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ, ଲକ୍ଷ୍ମୀନାରାୟଣ ସାହୁ, ଅପର୍ଣ୍ଣାଦେବୀ ଚାଲିଗଲେ । ତୁ କହୁ, ଜନସାଧ ପ୍ରାର୍ଥନା କରୁଥାଉ, ପୁଅଝିଅ କୋଳିଙ୍କ ନାଗ-ଦେବ ମହାପ୍ରଭୁ ଘଣ୍ଟଘୋଡ଼ାଇ ରଖିଥାଅ । ତୋ କୋଳିଙ୍କର ଟିପ ପଣୀ ଦେଖି ଜଣେ ଜ୍ୟୋତିଷ କହିଥିଲେ—"ଶାଶୁ ମଙ୍ଗଳକାମନା କରୁଛନ୍ତି ।" ସତ ତ । କିମିତି ଭଲ ହେଇଥିବେ ।

କେବେ ତୁ ରାତିରେ ଭଲକରି ଜଗରେ ଶୋଇବା ଜାଣୁ ନ ଥିଲୁ । ଜଗ ହେଉ ନଥିଲ । କାଲ ମହୁରଗ ପଡ଼ିଲେ, ସାଇପଡ଼ିଶାରେ କାଏ ରୋଗ ଓପାସ ରହିଲେ, କାଏ ଗର୍ଭକଷ୍ଟ ପାଇଲେ—ତୁ ସେମିତି ବସିଥିବୁ । କହୁଥାଉ ସଂସାର ସୁଖୀ ହେଉ ! ଜଗତର ମଙ୍ଗଳ ହେଉ ।

କୃଷ୍ଣକେଶରୀ ପୁରାଣ ଦଦା ତତେ ଦେଇଥିଲେ । ତୁ ପଢ଼ୁଥିଲୁ, ବନୋଦଙ୍କ ମାଗିଲ—ତୁ ତାକୁ ମନା ନ କରି ଦେଇଦେଲୁ । ମୁଁ ତା'ଠାରୁ ରଖିନେଲି—ମୁଁ ପଢ଼ିସାରେ, ତତେ ଦେବ । ଦେଖିଲି, ଗଜକୁମ୍ଭୀର ଉପାଖ୍ୟାନ-ରୁ ପଢ଼ିବା ପୃଷ୍ଠାରେ ମୟୂରଚନ୍ଦ୍ରିକା ଚିହ୍ନ ଦିଆଯାଇଛି । ତୁ ସେ ଚିହ୍ନ ରଖିଛୁ । କେତେ ପୁରାଣର ଗପ କହିଛୁ, ମୋର ମନେ ନାହିଁ । ଏ ବର୍ଷ ସାବିତ୍ରୀ ଉପାଖ୍ୟାନଟି, ସାବିତ୍ରୀ ବ୍ରତଦିନ ତୋ ଜୁଇଁ ପଢ଼ିଥିଲେ—ଯେଉଁ ବହିରୁ ।

ଏବର୍ଷ ଶିବ, ନୂଆବୋଉ ଆସିଥିଲେ । ଦିନଟିଏ ମାତ୍ର ରହିଲେ, ସାବିତ୍ରୀ ଅମାବାସ୍ୟା ପୂର୍ବରୁ । ବିଷ୍ଣୁ ତା ଆଗରୁ ଆସିଥିଲ—ସେ ଶାଢ଼ୀ ଦେଇଥିଲ । ଶିବ ଟଙ୍କା ଦେଲ । ନୂଆବୋଉ କହୁ କହୁ କାନ୍ଦୁଥିଲେ ତୋ କଥା—କିମିତି କିଛି କହିଲୁ ନାହିଁ । ହଁ, ଭଗବାନ ବଡ଼ଲୋକ । ଦିନଟେ ପଡ଼ିଥିଲେ ହେଲେ କାଏ ଅସୁଖ ପାଇଥା'ନ୍ତା । ତେଣୁ ତୁ ଝୁରାଇଦେଇ ଗଲୁ । ପୁଅ ଝିଅ ହୁଅନ୍ତୁ, କୋଳି ହୁଅନ୍ତୁ, ବୋହୂ ହୁଅନ୍ତୁ, ତୋ ଭାଇଭଉଣୀ ହୁଅନ୍ତୁ—ତୁ ସମସ୍ତିଙ୍କି କଷ୍ଟ ଦେଇ ଶାନ୍ତିପାଇଛୁ । କାଏ ତୋପାଇଁ କିଛି କରିନାହାନ୍ତି । କାଏ ତତେ ସୁଖ ଦେଇନାହାନ୍ତି । ଅନେକେ କହିଲେ, "କୋଟିକେ ଗୋଟିଏ ଏମିତି ମରଣ । ମହାମହା ଋଷିମୁନିମାନେ ଯୋଗ ସାଧିଥା'ନ୍ତି, ଇଚ୍ଛାମୃତ୍ୟୁ ବରଣ କରିଥାନ୍ତି ।"

ଯେତେବେଳେ ଦେଖାହୁଏ କେତେକଥା କହୁ । ଅରୁ ବାହାଘରକୁ ଆସିଥିଲୁ । ସବୁ ପ୍ରଭୁର ପଚାର କରୁଥିଲ । ସତସ୍ତରୀ ବର୍ଷର ବୁଢ଼ୀ ହୋଇ ମଧ୍ୟ କେତେ [illegible] ହାଦରଡ଼ ଖଜ ଜାଇ କଲୁଣି ତ କେତେବେଳେ ପିଠା ଛଆର

କରି ଗୁଣି ବସିଲୁଣି । ପରିବା କାଟିବା ତ ତୋର ନିୟମିତ ଅଭ୍ୟାସ । "ବୋଉ, ତୁ ଟିକିଏ ଶୋଉନୁ, ବସୁନୁ, କାହିଁକି ଏତେ କାମ କରୁଛୁ ?" ତୁ କହୁ, "ହଁ ମା, କେତେ ଶୋଇବି ବସିବି ?" ଘରେ ଥିଲେ ମଧ୍ୟ ନାତି ନାତୁଣୀଙ୍କୁ ଖୁଆଉଥିବୁ, ପିଲାଙ୍କୁ ତେଲହଳଦୀ ଲଗାଇ ଦେଉଥିବୁ । ମୁଁ ଯାଇଥିଲେ, କହେ, "ବୋଉଲୋ, ତୁ ଜପକରୁନୁ, ମାଳି ଗଡ଼ଉନାହୁଁ, ଏବେ ମଧ୍ୟ ଏତେ କାମ !" ଜବାବରେ କହୁ, "ଚଳନ୍ତ ପ୍ରତିମା ଏସବୁ । ଯାଙ୍କୁ ଅଯତ୍ନ କରି ସେ ଜପତପରୁ କଅଣ ମିଳିବ ?" ଏ ଚିଠିର ଉତ୍ତର ତୋ ପାଖରୁ ପାଇବି ନାହିଁ ଆଉ । କିଛି ଯନ୍ତ୍ରଣା କମିବ ବୋଲି ଏମିତି ଲେଖୁଛି ।

ସାନବୋହୂ ତୋର ବାଙ୍ଗଣ୍ଟିଏ । "ସାନ ମନପଣ୍ଡା, ସିଏ କି କାମ କରିପାରିବ । ତାର ମା'ତ ତାକୁ ଷୋଳବର୍ଷ ବାଂଝରେ ଜନ୍ମ କରିଥିଲା । ଗୋଟିଏ ବୋଲି ଝିଅ ତାର । ତା ବାପା ମଧ୍ୟ ସ୍ୱାଧୀନତା ସଂଗ୍ରାମୀ ଥିଲା । ବାପା ମରିଚ ତାର । ଥିଲାବେଳେ ବଡ଼ ଗେଲବସର କରିଥିଲା । ସିଏ କଅଣ କାମ କରିପାରିବ ?" ଏମିତି ଝିଅ ବଢ଼େଇବା, ବୋହୂ ପାଳିବା ମୁଁ କାହାରିକୁ ଦେଖି ନାହିଁ । ନିଜକୁ ଯେ କେତେ ଜଳାଞ୍ଜଳି ଦେଇଥିଲୁ ! ବ୍ରହ୍ମପୁରରେ ଦୁଇବର୍ଷ ରହିଲି । ଠାକୁରାଣୀ ଯାତ୍ରା ଦେଖିବାକୁ ଗଲେ, ରଥଯାତ୍ରା ଦେଖିବାକୁ ଗଲେ, କାର୍ତ୍ତିକମାସରେ ମହାଦେବ ମନ୍ଦିର ଗଲେ—ତୋ ପାଖ ଦେଇ ଯେମିତି ନହେଲେ ଯିବାକୁ ପଡ଼େ । କିମିତି କେଜାଣି ତତେ ଆଗ ପ୍ରଣାମ କରି, ମୁଣ୍ଡିଆ ମାରିଯାଏ । ତୁ କହୁ, "ରିକ୍‌ସାଟାରେ, ଏତେ ପଇସା ଖର୍ଚ୍ଚ କରି ଆସୁଛୁ !" "ମୁଁ କହେ, ନାଇଁଲୋ ବୋଉ, ପୁଆଡ଼େ ଗଲାବେଳକୁ ତ ତୋ ପାଖକୁ କିମିତି ଆସିଯାଉଛି ।

ତୋ'ପରି କିଏ କଲ୍ୟାଣ କରିବ—"ଅହିଅ ସୁଲକ୍ଷଣୀ ହେଇଥା"। ଜ୍ୱାଇଁଙ୍କୁ 'ଚିରଞ୍ଜୀବ ହେଇଥାଅ ।' ଏପରି କିଏ ଯେ କହିବ ଆଉ ।

ଗଲାବର୍ଷ ଏଇଦିନେ ଯାଇଥିଲି । ଡାକିଲି, "ବୋଉ ଚିହ୍ନୁକି ?" କହିଲୁ, "ହଉ ଦେଖିବା । ଏ ଘରକୁ ଷ୍ଟେସନଟା ପାଖପରା ? ମୁଁ ବଡ଼ଗଡ଼ରୁ ଆସେ ।" ମୁଁ ତତେ ଅନାଇଁଥିଲି—କେତେ ଜୋର୍‌ରେ କହୁଛୁ ! ଅଉ କଅଣ ଯାଇପାରିବୁ ? ପଚାରିଲି, "ବୋଉଲୋ, ତତେପରା କିଏ କହୁଥିଲା—କୋଡ଼ିଏବର୍ଷ ଜୀଇଁବୁ, କେତେବର୍ଷ ହେଲାଣି ?" କହିଲୁ—'ଦଶବର୍ଷ ହେଲାଣି । କିମିତି ଆହୁରି ଦଶବର୍ଷ କାହାର କିଛି ଖରାପ ନହେଉ । ପିଲାମାନେ କିମିତି ଭଲ ହେଇଥିବେ । ଏତେବର୍ଷ ଆହୁରି ବଂଚିବି !" ମୁଁ କହିଲି, 'ହଁ, ହଉ, କଅଣ ହେଲା ?' ଭାଇ-ଭଉଣୀ ପାଞ୍ଚଜଣଯାକ ଏକାଠି ହୋଇଥିଲୁ ସେତେବେଳେ ସେଠିକି । କହିଲୁ—"ଆଉଥରକୁ ଆସିଲେ, ଆର ଟୋକାଟାକୁ ଆଣିବୁ । ଏଇଟାକୁ ତ ଦୁଥର ଧରି ଆସିଲୁଣି ।" ଯାହାକୁ ନବାକୁ କହିଥିଲୁ ତାକୁ ଆଣି [illegible]

କହୁଥିଲ—"ବାବୁରେ, ତୁ ଟିକଟିଏ କାଟି କ'ର, ମତେ ନେଇଯାଉ, ମୁଁ ଆଈକୁ ଦେଖିଆସିବି ।" ସେ ଶୁଣିଲାନାହିଁ କି ମନ ଦେଲାନି । ମୋ ମନ ଯାହା କହୁଥିଲା—ସତ ହେଇଗଲା । କିଏ ବୁଝିବଲେ ବୋଉ ମନ, ମନ ମୋର ? ଆଉ କାହାଠୁ ଚିଠି ପାଇବାକୁ ଅନାଇଁ ରହୁନି । ତିନିବର୍ଷ ଆଗେ ଏଇ ଶ୍ରାବଣ ମାସରେ ମୋ ପାଖେ ଥିଲୁ । ଜୋଇଁଙ୍କର ତୋର ଜନ୍ମଦିନକୁ ପିଠା ଛାଣିଥିଲୁ । ପୂଜା କରିଥିଲୁ, ଏବେ ମଧ୍ୟ ତୁ ଯେମିତି ଅଛୁ—ମତେ ଲାଗିଯାଉଛି । ପୁଣି ଭାବୁଛି ଯେ ତୁ ନାହୁଁ ଅଉ । ଆଉ ଯିବାକୁ ଆଗ୍ରହ ହଉନି । ଶିବ, ବିଷ୍ଣୁ, କାହାଠୁ ଚିଠି ପାଇନି କି ଚିଠି ଲେଖିନି ମଧ୍ୟ ସେମାନଙ୍କୁ । ହଁ, ତାଙ୍କ ସୁଖ-ଦୁଃଖରେ ସିଏ ରହନ୍ତୁ; ମୋ ସୁଖଦୁଃଖରେ ମୁଁ ରହେଁ । ଗୀତା, ସୀତା ମାଟ୍ରିକ୍ ପରୀକ୍ଷା ଦେଇଥିଲେ । ରେଜଲ୍ଟ କଅଣ ହେଲା କେଜାଣି ? ଦେବୀ ଆଇ. ଏ. ପରୀକ୍ଷା ଦେଇଛି ।

ଏଥର ଗଲ ରଜସଂକ୍ରାନ୍ତି ଦିନ ଗାଁରେ ଅଛୁଁ—ଝିଅଟିଏ ଗାଁକୁ ବୁଲି ଆସିଥିଲା । ଶାଶୂ ମତେ କହିଲେ, "ଦେଖିଲଣି ? ଧାଉ ସହିତ ପଢ଼ୁଛି ଝିଅଟିଏ, ବଜେବ କଲେଜରେ ପଢ଼ୁଛି ।" ଦୋଳି ଖେଳିଲା ଝିଅଟି ଧାଉ ସହିତ । ମୁଁ ପଚାରିଲି,—"ଘର କୋଉଠି ?" କହିଲା—ନରେନ୍ଦ୍ରପୁର । ମୁଁ କହିଲି, "ମୋ ଭାଇ ସେଇଠି ଅଛି ।" ସେ କହିଲା—"ସିଏ ଆପଣଙ୍କ ଭାଇ ? ମୁହଁ ତ ସେମିତି ଦିଶୁଛି । ସାର୍ ବଡ଼ ମଜ୍ଜା ଲୋକ । ତାଙ୍କ ଝିଅ ମାଟ୍ରିକ୍ ପରୀକ୍ଷା ଦେଇଛି । ସାର୍‌ଙ୍କ ସ୍ତ୍ରୀ ବହୁତ ଭଲ । ଅମେ ଟଲେ ଚୁହନ୍ତି ନାହିଁ । ସାର୍‌ଙ୍କର ମା' ଥିଲେ, ଏଇ କେତେମାସ ହେଲା ମରିଗଲେ ।" ମୋ ମନ କେଉଁ କମିତି ହେଇଗଲା । ଠିକ୍ ତା—ପୂର୍ବରୁ ଅମୃ ଟଣରେ ହଳଦୀବସନ୍ତ ବୋବାଉଥିଲା । ଭାବୁଥିଲି କୋଉଠୁ ଚିଠି ଆସିବ ଅଜି । କିଏ କୁଣିଆ ଆସିବ । ଘରକୁ ଆସି କଅଣ ଜାମଫାଳ ସେ ଝିଅପାଖକୁ ଚାଲିବେଳକୁ ସେ ଗଲଣି ।

ଅରୁ ଆସିଛୁ ତା ଶାଶୁଘରୁ । ଅନେକ ସମୟରେ ତୋକଥା ମନେପକାଇ କଥା ହଉଛୁ । ଗୋଟେ ଗପ କହୁଥିଲୁ—ମନେ ପଡ଼ୁଛି । ଗୋଟା ବୁଢ଼ୀ ଥିଲା । କେତେ ଝିଅଙ୍କ ପାଇଁ ବଦଟିକ୍ କରି ବିଭା କରୁଥିଲା । ନଜର ଦୁ ଝିଅ ଥିଲେ । ତାଙ୍କପାଇଁ ଯେତେ ବର ଖୋଜିଲା ଅଉ ପାଇଲା ନାହିଁ । ଦିନେ ତା ପୁଅକୁ କହିଲା—ପୁଅ ମୁଁ ଅଉ ପାରିଲି ନାହିଁ । ତୁ ବୁଝ । ପୁଅ ମଧ୍ୟ ପାରିଲା ନାହିଁ । ବୁଢ଼ୀ ଦିନେ ବିରକ୍ତ ହୋଇ କହିଲା ଦୁ ଝିଅଙ୍କୁ ଧରି—ଯାହା ତମ ଭାଗ୍ୟରେ ଅଛି, ଯାହାକୁ ବାଟରେ ପାଇବ ତାକୁ ବିଭା କରିଦେବ । ବାଟରେ ଯାଉ ଯାଉ ବନାମେଘରେ ବିଜୁଳୀ ଘଡ଼ଘଡ଼ି ମାଡ଼ିଆସିଲା । ମା' ଦୁ'ଝିଅଙ୍କୁ ଧରି ଯାଉ ଯାଉ, ବଡ଼ ଝିଅ ଜଣଙ୍କ ଘରେ ପଶିଗଲା । ଟିକିଏ ପରେ ଅଉ କବାଟ ଫିଟିଲା ନାହିଁ । ବୁଢ଼ୀ ପଚାରିଲା— ଘରେ କଅଣ ଅଛି ଝିଅ ? ଝିଅ କହିଲା ହାଡ଼ ବାଦ ଟଙ୍ଗା । [illegible] ବୁଢ଼ୀ ଜାଣିଲା ସେ ଘର ହାଡ଼ଘର । ହେଲା ତୋ ଭାଗ୍ୟରେ [illegible] ହାନ ଝିଅ [illegible] ଆସିଲା । ବର୍ଷା, ଘଡ଼ଘଡ଼ି, ବିଜୁଳୀ ସେମିତି

ଗୃଲଛୁ ! ଗୋଟେ ଦେଉଳ ଭିତରେ ପଶିଗଲେ । ଝିଅ ଗର୍ଭଗୃ ଭିତରେ ରହି-ଗଲା । ଦେଉଳ କବାଟ ପଡ଼ିଗଲା । ଆଉ ଫିଟିଲା ନାହିଁ । ମା' ବାହାରେ ଉହୁ ପଗ୍ଚରିଲା—ସେଠି କଅଣ ଅଛୁଲେ ଝିଅ ? ଝିଅ କହିଲା—କଣେ ମରିଶୋଇଛୁ । ତୋ ଭାଗ୍ୟରେ ସେଇ ମଲାବର ଅଛୁ କହି, ମା' ଗଲା । ଝିଅ ଭିତରେ ରହିଲା । ଯୁବକଟି ଦିନଯାକ ମରିଶୁଏ, ରାତିକୁ ଉଠେ । ସେ ରାତିକୁ ଉଠିଲା, ଝିଅକୁ ପଗ୍ଚରିଲା—ତୁ ଏଠାକୁ କୁଆଡ଼ୁ ଆସିଲୁ ? କମିତି ଆସିଲୁ ? ଝିଅ ସବୁ କଥା କହିଲା । ଯୁବକଟି କହିଲା—ହଉ ରହ, ରାତିରେ ମୁଁ ଜୀବନ୍ତ ରହୁଛୁ, ଦିନରେ ଯାଉଛୁ, ସୂର୍ଯ୍ୟଦେବତାଙ୍କ ଦଉଡ଼ି ଟାଣିବାକୁ । ସେଥିପାଇଁ ଦିନରେ ମରି ଶୋଉଛୁ । ସନ୍ଧ୍ୟାବେଳକୁ ପୁଣି ଜୀଇଁ ଯାଉଛୁ । ଏମିତି ଗୃଲିଲା ତା ସଂସାର । ଝିଅ ସେତକ ଜାଣିଲାରୁ ଆଉ ଡରିଲା ନାହିଁ । ତାର ପୁଅଟିଏ ହେଲା । ସ୍ତ୍ରୀ ତାକୁ କହିଲା—ସାରା ଦିନତ ତମେ ନାହଁ—ଏ ସଂସାର କମିତି ଚଳିବ ? ପୁଅଟିଏ ହେଲା—ଏମିତି କେତେଦିନ ଚଳିବ ? ବର କହିଲା—ତୁ ଦିନେ ଖରାରେ ପିଲାକୁ ଗାଧୋଇଦବୁ—ସେ ବିରକ୍ତ କଲେ ତାକୁ ମାରିବୁ । ସୂର୍ଯ୍ୟ ଦେବତା ମତେ ପଗ୍ଚରିବେ—ଇଏ କିଏ ପିଲାକୁ ମାରୁଛୁ ? ମୁଁ ସବୁ ବୃତାନ୍ତ କହିବ । ଯେମିତି ପିଲା ଟିକେ ବଡ଼ ହେଲା—ତାକୁ ତା ମା ଗାଧୋଇ ଦେଲାବେଳେ ସେ ଅଝଟ ହେଲା । ମା ମାରିଲା । ସୂର୍ଯ୍ୟଦେବତା ପଗ୍ଚରିଲେ, "ଆରେ ଏ କିଏ ନାଗ୍ଗ ପିଲାକୁ ମାରୁଛୁ" । "ଏ ପୁଅ ମୋର" । "ତୋର ଏ ପୁଅ" ? ସେ ଯୁବକ ସୂର୍ଯ୍ୟଦେବତାଙ୍କୁ ସବୁ ଘଟଣା କହିଲା, "ମୁଁ ଦିନସାରା ଆପଣଙ୍କ ରଥ ଦଉଡ଼ି ଟାଣୁଛୁ, ସନ୍ଧ୍ୟାବେଳକୁ ମୋ ଜୀବନ ଫେରି ପାଉଛୁ । ମୁଁ ତ ନାହିଁ—ସେ ଏକୁଟିଆ ପିଲାଟିକୁ ଧରି ରହୁଛୁ, ଅଝଟ ହେଲେ ବିରକ୍ତରେ ପିଲାକୁ ମାରୁଛୁ" । ସେଠୁ ସୂର୍ଯ୍ୟଦେବତା ତାକୁ ଛୁଟି ଦେଲେ । ସେ ତା ଜୀବନ ଫେରି ପାଇଲା । ତା ସ୍ତ୍ରୀ ପୁଅକୁ ନେଇ ସୁଖରେ ସଂସାର କଲା । ତେଣୁ ଜଣଙ୍କର ହାଡ଼ଘର, ଜଣଙ୍କର ମଲାବର । ମଲାବର ବଞ୍ଚିଲା । ସ୍ତ୍ରୀ ଆଉ ପୁଅ ମଲାବରକୁ ଜୀବନ୍ତ କଲେ । ବୁଢ଼ୀ ଓନ୍ତପଡ଼ ଆଉ ବରପଡ଼କୁ ଯେଉଁ ନଈରେ ଭସାଇ ଦଉଥିଲା । କିଏ କାହାର ବରକନ୍ୟା ଜୁଟୋଉଥିଲା । ହେଲେ ତା ଝିଅଙ୍କୁ ଯେତେ ଚେଷ୍ଟା-କଲେ ମଧ୍ୟ ଜୁଟାଇ ପାରିଲା ନାହିଁ । ସେମାନେ ଯେଝା ଯେଝାର ଭାଗ୍ୟ ଭୋଗିଲେ ।

ଭଲ ଭଲ ଖୁଆଇ ଶୀତରୁ, କାକରରୁ, ବର୍ଷାରୁ ରକ୍ଷା କରୁଥିଲ ତୁମେ ଯେତେଦିନ ଥିଲ । ଆମେ ଏଣିକ ଆମ ଭାଗ୍ୟ ଭୋଗକରୁଛୁ । ଏ ଦେହ ଦେଇଛ ବାପା, ମା ହେଇ । ଏ ଦେହ ଯେତେଦିନ ଥିବ, ମନେକରୁଥିବୁ । ଆଉ ତମ ଦୁହିଁଙ୍କୁ ପାଇବୁ ନାହିଁ ।



# ଭାଇକୁ ଚିଠି

ଅପା, ତୋ କଥା ବହୁତ ମନେ ପଡ଼ୁଛି ମ ! କିନ୍ତୁ କ'ଣ କରିବି, ଉପାୟ ନାହିଁ ତତେ ଦେଖିବାର । ମୁଁ ତ ଗୋଟିଏ ଯାଗାରେ ମାଦଳ ପରି ରହିଲି । ଆଠବର୍ଷ ବାଦେ ଆସିଗଲି ମୋ ପତିଙ୍କ ସହ ପାନପୋଷ । ଏଇଠି ଘର ଦୁଆର କରି ଝାଣପଣରେ ରହିଗଲି । ବାରି କରେ ନଈ । ନଈପାରି ହେଲେ ବେଦବ୍ୟାସ ମନ୍ଦିର ।

ଚ' ବର୍ଷରେ ତୁ ମୋଠୁ ବଡ଼ । ମୁଁ ସାନ ହେଲେ ମଧ୍ୟ ବଡ଼ ହେଲାପରେ ମତେ ବଡ଼ କହନ୍ତି । ତତେ ସାନ କହନ୍ତି । ତୁ ସବୁ ବେଳେ ସମସ୍ତିଙ୍କର ଗେହ୍ଲା । ନୁହେଁ ? ତୋ ଲାଗି ବାପା ବୋଉ କେତେ କି ଚିନ୍ତା କରନ୍ତି, ମୋ ଲାଗି ଏତେ ନୁହଁ । ମୁଁ ଯେବେ ତୋ ଉପରେ ରାଗିଯାଏ, ତୁ କିଛି ନ କହି ଚୁପ୍ ରହିଯାଉ । କି ଶୀତ, କି ଖରା, କି ବର୍ଷା ସବୁ ବେଳେ ମୁଁ ଆଗେ ଉଠଇ ବୋଉ ସାଥିରେ । ତୁ କିନ୍ତୁ ଉଠିବୁ ନାହିଁ । ବାପା ଆହୁରି ତୋ ପିଠି ଆଉଁଶି ଗେହ୍ଲାକରି, ଶୀତଦିନ ହେଇଥିଲେ, ଘୋଡ଼ାଇ ଦେବେ—"ଶୋଇଥା ମୋ ମା' ! ଶୋଇଥା ! ଶୀତ ହଉଥିବ ।" ମତେତ ନାହିଁ, ଭାଇମାନଙ୍କୁ ମଧ୍ୟ ନାହିଁ, ତୋରି ପାଖରେ ଯେତେ ସ୍ନେହ ଶ୍ରଦ୍ଧା ଢାଳି ଦେଉଥିଲେ । ତୁ ସେମିତି ଅଳସେଇଟାନ ! ମୁଁ ଆସି ରନ୍ଧା ବସେଇବି, ତୁ ଶୋଇଥିବୁ । ମୋ ସାଙ୍ଗ ଜାନକୀ ଆସି ମୋ ସାଙ୍ଗେ, ବୋଉ ସାଙ୍ଗେ ଗପ ଜମେଇଦେବ । ତତେ ଖୋଜିବ—ମଣି କ'ଣ ଉଠି ନାହିଁ ? ତୁ ଉଠି ନଥିବୁ । ସେ ବି ତତେ ଉଠେଇବ ନାହିଁ । ଉଠିଲେ, ବାହାର ବାହାର କାମ ଟିକେ କଥଣ କରିଦେବୁ, ବହି ପଢ଼ିବୁ ।

ତୋର ଭାରି ଇଚ୍ଛା ଥିଲାନା ଅପା—ଲେଖିକା ହୋଇଥାନ୍ତି । ଗାୟିକା ହେଇଥାନ୍ତି । କବି ହୋଇଥାନ୍ତି । ପାଠ ପଢ଼ିଥାନ୍ତି । ତୋର ସେସବୁ ଭିତରେ ଲୁଚି ରହିଗଲା । କିଛି ତ ହେଲୁନି । ଆଜି କ'ଣ ଆଉ ବେଳ ଅଛି ଯେ, କିଛି କରିହେବ ! ବୁଝିଲୁ ଅପା ! ତୁ ସମସ୍ତିଙ୍କର, ତୋର କିଏ ନୁହନ୍ତି । ମତେ ହେଲେ, ସାନ ଭଉଣୀଟିତ ମୁଁ ତୋର । ତେବେ ତ କେତେ ଭଲପାଏ ମୁଁ । ତୁ ପିଲାଦିନୁ ମୋ'ର ଗାଲ ଚିମୁଟି ଚିମୁଟି ଖଣ୍ଡିଆ କରି ଦେଇଛୁ । ମୁଁ ସିନା ମୋଟିଟା, ତତେ କିଛି କରି ପାରେନି ।

[illegible] ବର୍ଷେ ବା ଦିବର୍ଷ ଆଗେ ବାହା ହେଇଥିଲେ, ମୋ ବାହାଘର [illegible] । ମନଟା ଏତେ ଖରାପ ହେଇ ନଥାନ୍ତା—ହେଇଗଲା ମୋ

ବାହ୍ୱାଘରଟା, ମୋ ଅପା ଦେଖିପାରିଲା ନାହିଁ । ବଡ଼ ଆଡ଼ମ୍ବରରେ ବାହ୍ୱାଘର ହୋଇଥିଲା । ତୁ ତ ଠିକ୍ ସ୍ୱରଦାନ ଆଗେ ବାହ୍ୱା ହୋଇଗଲୁ । ମୁଁ ଭାଗ୍ୟବାନ ନଥିଲି, ତୁ ଯତରେ ବାହ୍ୱାହୋଇ ଚାଲିଯିବୁ । ତୁ ଗଲାପରେ ମୋ ମୁଣ୍ଡରେ ଆକାଶଟା ଛିଣ୍ଡି ପଡ଼ିଲା । ଅପା ତ ଗଲା, ଘର, ଭାଇମାନେ, ବାପା ବୋଉ, ମୁଁ କ'ଣ କରିବୁଁ । ଯତରେ ଯେମିତି ଆମକୁ ସବୁ ତୁ ସମ୍ଭାଳି ଥିଲୁ ! ଦେଖିଲା ବେଳକୁ ତୋପରି ସ୍ୱାର୍ଥପର କିଏ ନାହିଁ । ତୁ ଯେହେତୁ ବଡ଼ ଭଉଣୀ, ତେବେ ଆମେ ଭାଇ ଭଉଣୀ କେତେ ମାନୁ'ଥିଲୁ !

ତୁ ମନେଇଟାଏ ଅପା । ତୋ ମନହେଲେ ତୁ କରିବୁ' ନହେଲେ ନାହିଁ । ତୋ ନଣନ୍ଦ ପରା ଗୀତ ଗାଆନ୍ତି—"ଏଠିକି ମନେଇ ଝିଅ", ଆଉରି କ'ଣ ସବୁ । ତୋ ଦିଅର କହନ୍ତି—ନୂଆବୋଉ ଆମର ଭାରି ମନେଇ, ମନହେଲେ କରିବେ । ତୁ ତ କୋହଥିରେ ହେଲେ ଉଁ ଚୁ ହଉନେଇ । ଶୁଣିଯିବୁ । ସେଇ ତୋର ସହନଶୀଳତା ।

ଏତେ ଭଗବାନେ ତତେ ଦେଇଛନ୍ତି । ତୁ ବଡ଼ ମାନ୍ୟାଶ୍ରୀନ । ମୋ ବାହ୍ୱାଘର ଖାଲି ? ବଡ ଭଉଣୀଟି ତୁ, କୋଉ ଭାଇ ବାହ୍ୱାଘରକୁ ଆସିଲୁ ନାହିଁତ ! ତୁ କେତେ ଯାଗା ବୁଲିଲୁ । ଭାବିଲା ବେଳକୁ ତୁ କାହାର କଷ୍ଟ କରନୁ । ଭିଣେଇ ସାହେବଙ୍କୁ ମୁଁ ଏତେ ଭଲପାଏ । ତୋପରି ଅଲସେଇ ମନମୁଖୀ ଝିଅଟିଏ ଧରି ସେ କମିତି ହଇରାଣ ହୋଇ ନଥିବେ ! ତାଙ୍କ ଚଲାପଥରେ ଫୁଲଚନ୍ଦନ ବୃଷ୍ଟି ହଉ । ସେ ଦୀର୍ଘଜୀବୀ ହୁଅନ୍ତୁ । ତୁ କାଲେ ମୋ ଉପରେ ରାଗିବୁ, ସେଥିଲାଗି ମୁଁ ତାଙ୍କୁ ବେଶି କଷ୍ଟ ପ୍ରଶଂସା କରୁନାହିଁ । ଏଇ ସାତ ଆଠମାସ ହବ ଗଣ୍ଡାଏର୍ କଲେ । ତୋ ପାଖରୁ ଦୂରରେ ଯାଇ ରହିଲେ । ତୁ ଏତେ ଗେହ୍ଲା । କୁଆଡ଼େ ଗଲା ? ଏଇ ବୟସରେ ତୁ ତ ସବୁ କରୁଛୁ । ମୁଁ ଭାବିଲା ବେଳକୁ କେତେ ମତେ ବାଧୁଛି ! କମିତି ବାଢ଼ି ଖାଉଥିବ—ନଦେଲେ ଖାଇବ ନାହିଁ, ଯେତେବେଳେ ହେଲେ କହିବ ଭୋକ ନାହିଁ ।

ଅତୀତକୁ ଭୁଲିଯା । ସବୁବେଳେ ଅତୀତ କଥାକୁ ଭାବି ଝୁରନା । ତୋ ଦେହ କ୍ଷୀଣ ହୋଇଯିବ । ନିଜ ସାନ ଝିଅଟିକୁ ନଜର କର । ତତେ ବାହ୍ୱାହେଲାପରେ ଭିଣେଇବାବୁ ତୋ ପାଇଁ ଦିଖଣ୍ଡି ଭଲ ବହି କିଣି, ତୋତେ କଲ୍ୟାଣୀ ବୋଲି ସମ୍ବୋଧନ କରି, ବହି ଦିଖଣ୍ଡି ପଢ଼ିବାକୁ ଦେଇଥିଲେ । ତୁ ଏଯାଏ ସେ ବହି ସାରିଲୁ ନାହିଁ । ଆଉ କ'ଣ ସମୟ ଆସୁଛି, ତୁ ପଢ଼ି ପାରିବୁ ? ଯଦି ପାରିବୁ ପଢ଼ିଦେ ।

ମୁଁ ସିନା ଭେଁ ଭେଁ କାନ୍ଦ ପକାଇବି । ହସି ପକାଇବି । ତୁ ସହଜରେ କାନ୍ଦିବୁ ନାହିଁ । ତୋତେ ଅତି ବାଧିଲେ କାନ୍ଦିଦବୁ—ଲୁହ ପୋଛୁଦେଲେ [illegible] କାଣି ପାରିବେନି ।



ମୋ ଆଖି ଆଗରେ ନାଚ ଯାଉଛି---ତୋର ବାହାଘର । ତୁ ଏତେ ଶୀଘ୍ର ବୁଢ଼ୀ ହୋଇଗଲୁ, ଭଉଣୀ ଆମର ଶଙ୍କାଏର୍ କଲେ, ବୁଢ଼ା ହୋଇଗଲେ ! ନା । ନା । ମୁଁ ବିଶ୍ୱାସ କରିପାରେ ନାହିଁ । ତେବେ ସେ ତୋ ପାଖରୁ ଦୂରରେ ରହିଲେ ତୁ ପାଗଳୀ ଭଳି ଏପାଖ ସେପାଖ ଘୂରି ବୁଲୁଛୁ ! କାହିଁକି ଏ ଅସ୍ଥିରତା ?

ବୋଉ ବାପା ତୋ ଲାଗି ଚିନ୍ତା କରୁଥିଲେ—କୋଉଠି ବାହାହେବୁ, କେମିତି ଚଳିବୁ । କିଏ କେତେ ସବୁ ତୋତେ ସ୍ନେହ ଶ୍ରଦ୍ଧା କରନ୍ତି ପିଉସୀ, ମାଉସୀ, ମାମୁଁ, ମାଇଁ, ! କ'ଣ କି ତୁ ଏମିତି ! ଯେମିତି ସ୍ୱର୍ଗରୁ ଆସିଛୁ । ହଁ। ହୋଇପାରୁ । ସ୍ୱର୍ଗର କନ୍ୟାଟି, ମର୍ତ୍ତ୍ୟକୁ ଆସିଛୁ । ଅଭିନୟ ସରିଲେ ଚାଲିଯିବୁ । ମୁଁ କହୁଛି—ତୁ ଯେମିତି ଶୁଣୁଛୁ । କହନ୍ତି ପରୀ, ଚନ୍ଦ୍ର ଦର୍ପଣ—ମୁଁ ତତେ ଖାରୁଥିଲେ, ତୁ ମତେ ଖାରୁଥିବୁ । ମୁଁ କାହିଁ ସୁଦୂର ବେଦବ୍ୟାସ ପାଖରୁ ଖାରୁଚି, ତୁ କଷ୍ଟେ ଶୁଣୁଥିବୁ ।

ହଁ, ତୋ ବାହାଘର କଥା, ମୋ ବାହାଘର କଥା ପଡ଼ୁ ପଡ଼ୁ ଏତେବାଟ ଗଲଣି । ମୋ ବାହାଘର ପରେ ପରେ, ମୋ ସୋହାଗ ରାତିଟି ପୂର୍ବ ମାସେ ଘୁଞ୍ଚି ଗଲା । ମହେଶଙ୍କୁ କିଏ ଗୁଣି ଗାରେଡ଼ି କଲା । ସେ ମୂର୍ଚ୍ଛା ହୋଇ ଯାଉଥିଲେ । ଭଲ ହଉ ହଉ ମାସେ ଲାଗିଗଲା । ବାପା ତତେ ଲେଖିଥିଲେ ଏକଥା । ଏଇ ରାଉରକେଲା ବର । ସାନ ପୁଅଟି ଜନ୍ମହେବାକୁ ପାଞ୍ଚମାସ ଥାଏ । ମୁଁ ଖଟ ଉପରେ ଚିତ୍ତ ହୋଇ ପଡ଼ିଥାଏ । ଦିନ ବେଳଟା । ମୂଷା ଧରିବାକୁ ସାପ ଆଟୁ ଉପରେ ପଶିଲା । ଖୋଲା ଆଟୁ । ମୂଷାସହ ସାପ ମୋ ପେଟ ଉପରେ ପଡ଼ିଲା । ତା ପରଠୁ ମୁଁ ଆଉକିଛି ଜାଣିନାହିଁ । ମୃତ୍ୟୁ ସହିତ ମୋର ଲଢ଼େଇ ଚାଲିଲା । ସାତଦିନ ପରେ ମୋ ଆଖି ଖୋଲିଲା । ଦେଖିଲି, ମହେଶ୍ୱରବାବୁ ବଡ଼ ଅସହାୟ ଭାବରେ ମତେ ଚାହିଁ ରହିଛନ୍ତି ।

ପିଲାମାନେ ମତେ ଘେରି ରହିଛନ୍ତି । ଜୁଳୁଜୁଳୁ କରି ଚାହିଁଛନ୍ତି । ମତେ ଯମପୁରରୁ ଫେରାଇ ଆଣିଲେ ।

ସେ ଚାଲିଗଲେଣି ଆଠବରଷ ହେଲା । ତାଙ୍କୁ ଜପାମାଳି କରି ଜପୁଛି । ଆଉ ଏଇଠି ଏଇ ଗୋଟିଏ ଯାଗାରେ ଅଛି । ଏଇ ଅନାଥିଆଙ୍କୁ, ଈଶ୍ୱରଙ୍କ କୃପାରୁ ପିଲାଏ ବନସ୍ତର କଣ୍ଟା ଯେମିତି ଆଗେ ଗୋଜା ହୁଏ, ହେଲେଣି । ପୁଅ ଦି'ଜଣ ବାହାହେଲେ । ଦି ବୋହୂ ଆସିଲେ । ନାତି ନାତୁଣୀ ଚାରି ପାଞ୍ଚ ହେଲେଣି । [illegible]ମାନଙ୍କୁ ତାଙ୍କର ରୂପରେ ଦେଖୁଛି । ଘର ଦୁଆର ପିଲାଏ [illegible]ଲେଇଲେଣି । ବୋହୂ ରଙ୍ଗୀନ ଟିଭି ଅଣିଛି, ମୁଁ ଦେଖୁଛି ।

ହଁ, ମହେଶଙ୍କ କଥା କହୁଥିଲି । ସେଇ ବାହାଘର ସମୟରୁ ରୋଗ ଭଲ ହୋଇଗଲା । ତା'ପରେ ଆମ ସୁଖ ଦୁଃଖର ସଂସାର ଚାଲିଲା । ପୁଅଟିଏ ହେଲେ । ଚାଲିଲା ଆମର ଜୀବନ ଡଙ୍ଗା । ପୁଣି ଟାଇଫଏଡ୍ ହେଲା ମହେଶଙ୍କୁ । ସେଥିରୁ ଭଲ ହେଲେ । ଯୋଉ ପୁଅଟି ମୋର ଗର୍ଭରେ ଥିଲାବେଳେ ସାପ ପଡ଼ିଯାଇଥିଲା, ଜନ୍ମହେଲା !

ଦିନେ ମହେଶ କ'ଣ ସବୁ ପିଲାଙ୍କ ପାଇଁ କିଣି ଆଣି ଘରକୁ ଆସିଲେ । ଜିନଷପତ୍ର ହାତରେ ଧରିଛନ୍ତି—ସେଇ ପୁଅଟି କୋଉଠି ପଡ଼ିଯାଇ ଆସିଛି—ତା ନାକରୁ ଦ'ଧାର ରକ୍ତ ବୋହୁଛି । ଦେଖିଦେଲେ । ବସି ପଡ଼ିଲେ । ପଡ଼ିଗଲେ । ମୁଁ ପାଖରେ ଥିଲି, ମୋ କାନ୍ଧ ଉପରେ । ମୁଁ ଧରିନେଲି । ପିଲାମାନେ ସବୁ ସ୍କୁଲକୁ ଯାଇଥିଲେ । ମୋର ସାହାଯ୍ୟକାରିଣୀ ପଡ଼ୋଶୀଙ୍କୁ ଡାକପକାଇଲି । ସାଇପଡ଼ିଶା ଲୋକେ ଆସିଲେ । ମହେଶ ଅଚେତ । ତାଙ୍କୁ ସାଙ୍ଗେ ସାଙ୍ଗେ ମୋ ପାଖରୁ ଡାକ୍ତରଖାନା ନେଇଗଲେ । ସେ ଅଚେତ ଅବସ୍ଥାରେ ସାତଦିନ ପଡ଼ି ରହିଲେ । ମତେ ଆଉ ପିଲାମାନେ କି ଆଉ କଏ ହେଲେ ନେଲେ ନାହିଁ । ମୁଁ ଗଲେ ମଧ୍ୟ ମତେ ଫେରାଇ ଆଣିଲେ । ମୁଁ ଆଉ ଦେଖିପାରିଲି ନାହିଁ ।

ହୁଏତ ମୋରି କାନ୍ଧଉପରେ ପଡ଼ି ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ବୋଲି ମୋ ବିଶ୍ୱାସ । ଏଇ ତାଙ୍କର ସ୍ମୃତି ନେଇ ବଞ୍ଚିରହିଛି । ଏଇ ନାତିମାନଙ୍କ ଠେଇଁ, ନାତୁଣୀମାନଙ୍କ ଠେଇଁ ଯେମିତି ତାଙ୍କରି ରୂପକୁ ଦେଖୁଛି । ଯହିଁ ଗଲେ ସେଇ ରୂପ ମୋର ଆଖିରେ ନାଚୁଛି । ପୁଣି ଭାବୁଛି —ଗଲାଣିତ ଯାଉ, ସେ ପୋଡ଼ା ମୂରଲୀ ନବାଜୁ ଆଉ ।ନା' ନା' । ତାଙ୍କ ଫଟୋଟି ମୋ ଆଗରେ ଅଛି, କେମିତି ଭୁଲିବ ?

ତୁମେମାନେ ଯୋଉ ଘରେ ଆଗେ ଥିଲ, ସେଘର କଥା ମନେ ପଡ଼ୁଛି । ଗାଈ ଥିଲା । ଯୋଉ ଦିନ ତୋ ଝିଅ ବାହାଘର, ସେଇଦିନ ଗାଈର ନାତି ଜନ୍ମ ହେଉଥିଲା । ରଖିଆଳ ଠେଙ୍ଗା ଧରି ଜଗି ଠିଆ ହୋଇଥାଏ, ଏଣେ ହୁଳ-ହୁଳି ପଡ଼ି ଶଙ୍ଖ ବାଜୁଥାଏ । ବାଛୁରୀଟି ହେଲା । ସିଏ ହେଲେ କହିଲା ଭଲ । ଶୁଭ । ପରଦିନ ହତାବାହାରେ କାହାର ଗାଈଟିଏ ପ୍ରସବ ବେଦନାରେ ବ୍ୟସ୍ତ ହଉଛି, ତୋ ରଖିଆଳ ଆସି କହିଲା, "ମା' ଗୋ, ହେଇ ଦେଖିଲିଣି—ବାହାରେ ଗାଈଟି ବାଛୁରୀ କରିବ ଗୋ ମା ।" ତୁ ଉଠିପଡ଼ି—"ଯା' ଯା' ବାସନ୍ତୀକି ଡାକ । ତମେ ତମ ପୁଅ ସମସ୍ତେ ଯାଇ ଘେରି କରି ଏଇ ହତାକୁ ଗାଈ ନେଇଆସ । ଏଇ ହତାଭିତରେ ଗାଈ ଜନ୍ମକରୁ" ବୋଲି କହିଲୁ । ସେମାନେ ଗଲେ । ଗାଈକୁ ଭିତରକୁ ଆଣିଲେ । ତୁ ରଖିଆଳକୁ କହିଲୁ, ଗାଈକୁ ଆଣ ! ସେ ଜଗି ଠିଆହେଲା । ଆଉମାନେ ହସଖୁସି ହଉଥାନ୍ତି, "ଆମ [illegible] !

କାହାର ଗାଈ ଭଳି । ଆମର କ'ଣ ଯେ ଆମେ ଜଗିବା । ହଉ ଦେଖିବା, ବାଛୁରି ହଉ । ଆମେ ଗାଈ ଛାଡ଼ିବା ନାହିଁ ଗୋ ମା !"

ତୋ ହୁକୁମରେ ଗାଈ ଲାଗି ପାଣି ଗରମ ହଉଥାଏ । ଦେଖୁ ଦେଖୁ ରାତ୍ର ଥାଇ ମାଈ ବାଛୁରିଟିଏ ହେଲା । ଗାଈର ପେଟ ଖାଲି ହୋଇଗଲା । ତୋ କଥାରେ ପୁଅ ଗରମ ପାଣିରେ ଗାଈଖାଦ୍ୟ ଗୋଳାଇ ଗାଈକି ଖାଇବାକୁ ଦେଲା । ଗାଈବାଲା ଗାଈ ଖୋଜି ଖୋଜି ତୋ ହତାରେ ପହଂଚିଲାବେଳକୁ ଗାଈ ଖାଇପିଇ ସାଷ୍ଟମ ହୋଇ ବାଛୁରିକୁ ଚାଟିବାରେ ଲାଗିଛି । ଗାଈବାଲାର ଆନନ୍ଦ କହିଲେ ନସରେ । କହିଲା, "ହଉ ମା, ଗାଈ ଛାଡ଼ିଦଅ ।" ବାସନ୍ତୀ କହିଲା, "ସେ ତ ନବ, ତୁ ମା କାହିଁକି ଏତେ ଖାଇବାକୁ ଦେଲୁ ?" ଖବୁଛୁ, ତୋର ଏମିତି ଗୁଣ ମଧ୍ୟ ଅଛି !

ତୋ ରଖୁଆଳ ଠଉଁ ଶୁଣିଥିଲି, ସେ ପାଗଳୀ କଥା । କୁଆଡ଼େ ମନ୍ଦିରେ ମନ୍ଦିରେ ଭୁକ କନା ତୋ ଘରେ ପହଂଚ ଯାଏ ଆଉ ଜଣେ ରାନ୍ଧ ଖାଇବା ପାଇଁ ରାନ୍ଧାମାଗେ । ତୁ ସାଙ୍ଗେ ସାଙ୍ଗେ ଡାଲା ସଜାଡ଼ୁ—ଚାଉଳ, ଡାଲି, ପରିବା ଘିଅ । ଜଣେ ବି ଅଗଣା ଚୂଲୀ ପରିଷ୍କାର କରି ଜପା ପୋଛି କରି, ଡେକଚି, କଡ଼େଇ, ଜାଳ ଆଣି ଦଉ । ସେ ରାନ୍ଧ ବାଢ଼ି ଖାଇଦେଇ ଯାଏ । ତୁ ସବୁ ସଫାସଫି କରି ସାଉଁଉ । କିମିତି କରୁ ସବୁ ? କାହିଁକି କରୁ !

ପତ୍ରରେ ଏତିକ ମନେଇ ଦିଅନ୍ତୁ !

ତୋର ଅଭାଗିନୀ ସାନ ଭଉଣୀ ।



# କଣ କହିବ ?

ପ୍ରଥମେ ମନରେ ପ୍ରଶ୍ନ ଉଠେ ଏ ଲେଖାଗୁଡ଼ିକୁ କ'ଣ କହିବ ? ଗଳ୍ପ ନା କାହାଣୀ ? ଅବଶ୍ୟ ଏ ଦୁଇଟି ଭିତରେ ଥିବା ଚିକ୍କଣ ପାର୍ଥକ୍ୟଟିକୁ ମୁଁ ସହଜରେ କହି ପାରିବିନି । ମୋ' ପାଖରେ ତ ଆଜି 'ଗପ' ଓ 'ଗଳ୍ପ' ଭିତରେ ମଧ୍ୟ କେମିତି ତଫାତ୍ ଦେଖା ଦେଇଛି । ଗପ ବୋଧହୁଏ କାହାଣୀର ପାଖାପାଖି । ଗୋଟିଏ ଘଟଣାର ସିଧାସଳଖ ବର୍ଣ୍ଣନା । ମାତ୍ର ଗଳ୍ପରେ କେମିତି ଏଇ ସିଧାସଳଖ କହିବା ଭିତରେ କଳାତ୍ମକ ଗୁରୁତ୍ୱ ଦେଖାଦିଏ । ଗୋଟିଏ ଅନୁଭୂତିକୁ ଗୋଟିଏ ନିର୍ଦ୍ଦିଷ୍ଟ ଢଙ୍ଗରେ ଜୀବନ୍ତ କରିବାର ଚେଷ୍ଟା ହୁଏ । ଗପ ଓ କାହାଣୀକୁ ଲୋକେ ଶୁଣନ୍ତି ମାତ୍ର ଗଳ୍ପକୁ ପଢ଼ନ୍ତି । ଏହା କେବଳ ଆମ ମନକୁ ଛୁଏଁନି, ଏହା ଆମ ବୁଦ୍ଧି ଓ ଚେତନାକୁ ଛୁଇଁଯାଏ । ଅନେକ ସମୟରେ ଗଳ୍ପରେ କାହାଣୀ ନଥାଏ । ଘଟଣାର ଚମକ ନଥାଏ । ନିଛକ ଅନୁଭୂତିଟିଏ ନିଜସ୍ୱ ଭାବରେ ଦାନା ବାନ୍ଧିଥାଏ । ଗଳ୍ପରେ ତେଣୁ ତୀର୍ଯ୍ୟକତା ଅଧିକ । ଆଉ ଏହି ତୀର୍ଯ୍ୟକତାରେହିଁ ନିହିତ ଏହାର କଳାତ୍ମକତା ।

ଆଜିର ଗଳ୍ପରେ ତେଣୁ କଳାର ଦୃଢ଼ତା । ଏହି ଦୃଢ଼ତା ଆସେ ଜୀବନକୁ ନିବିଡ଼ ଓ ସତ୍ୟଶୀଳ ଭାବରେ ରୂପ ଦେବାର ପ୍ରୟାସରୁ । ଏହି ପ୍ରୟାସରୁ ସୃଷ୍ଟି ହୁଏ ସବୁ ପ୍ରକାର ପରୀକ୍ଷା, ସବୁ ପ୍ରକାର ଆଙ୍ଗିକତା । ଏହିଠାରେ ହିଁ କଳାର ରହସ୍ୟ । ଏହା ଜୀବନର ନିଛକ ଫଟୋଗ୍ରାଫିକ୍ ରୂପ ନୁହେଁ । ଏହା ଏକ ସତ୍ୟଶୀଳ ଅଥଚ କୃତ୍ରିମ ପୁନର୍ବିନ୍ୟାସ । ଗଳ୍ପ କହିଲେ ଏହିପରି ଏକ କଳାତ୍ମକତାକୁ ହିଁ ବୁଝିଥାଉଁ । ଏହା ପାଖରୁ କେବଳ ଘଟଣାଟିଏ ଆଶା କରୁନାହିଁ । ଏହା ଗୋଟିଏ ଗୋଟିଏ ଆଇଡିଆକୁ ନେଇ ମଧ୍ୟ ଗଢ଼ି ଉଠେ । କାହାଣୀସ୍ଥାନ ଜୀବନର ଟୁକୁରା ହୋଇଯାଏ ।

ଏହିପରି ଏକ ଜଟିଳ ଗଳ୍ପତ୍ୱ ବୋଧ ଭିତରେ ବି ଆଉ ଗୋଟିଏ ଧାରା ଧୀରେ ଧୀରେ ଫୁଟି ଉଠୁଛି । ସେ ଧାରାଟି ହେଉଛି କାହାଣୀର ସରଳତା ଭିତରେ ଗଳ୍ପର ଜଟିଳତାକୁ ଧରିରଖିବା ପ୍ରୟାସ । ଏହା ଏକ ଅଦ୍ଭୁତ ସରଳତା ଯାହା ପାଠକକୁ ମୁଗ୍ଧ କରିଥାଏ । ଅନୁଭୂତିର ଫର୍ଦ୍ଦ ଗୋଟେ ପରେ ଗୋଟେ ପାଠକ ଆଗରେ ଖୋଲିଦିଏ । ତଥାକଥିତ କଳାହୀନତା ହିଁ ଏପରି ଚତୁର ଏକମାତ୍ର କଳା । ଏଥିରେ ପାଠକ ଗଳ୍ପର ଆଙ୍ଗିକରେ ଛନ୍ଦି ହୋଇଯାଏ ନାହିଁ । ଗଳ୍ପ ଆସେ ସିଧା ସଳଖ କାହାଣୀ ରୂପରେ । ଯେମିତି ଜୀବନ ଦେଖାଦିଏ, ସେଇମିତି ।

ତେଣୁ ଆଜିର ଗଳ୍ପ ପାଠକ ପାଖରେ ଏ ଗପ ଗୁଡ଼ିକ ହଠାତ୍ ରଙ୍ଗହୀନ, ଗମ୍ଭୀରତାହୀନ ବୋଲି ମନେହୁଏ । ମାତ୍ର ସିଧା ସଳଖ କହିବାର ଢଙ୍ଗଟିର ନାଟକୀୟତା କିନ୍ତୁ ବିଚଳିତ କରେ । ଯେମିତି ବିଚଳିତ କରେ ସ୍ଥିର, ସ୍ୱଚ୍ଛ, ଜଳଗତିର ଗମ୍ଭୀରତା । ଏଥିରେ ଅଛି କେବଳ ଅନୁଭୂତି । କହିବାର ଆଭିଜାତ୍ୟ ନାହିଁ, ଅଛି ସରଳ ଆନ୍ତରିକତା । ଜଣେ ସାଧାରଣ ଓଡ଼ିଆ ଘରର ବୋହୂ, ଘର ସଂସାରର ଜଂଜାଳ ଭିତରେ ଜୀବନକୁ ଯେଉଁ ଭାବରେ ପାଇଛି, ତା ଜୀବନରେ ଯେଉଁ ଚରିତ୍ର ଗୁଡ଼ିକ ଯେଉଁ ଭାବରେ ଆସିଛନ୍ତି, ତା' ଆଗରେ ପୃଥିବୀ ଯେଉଁ ଭାବରେ ବଦଳି ଯାଇଛି ତାକୁହିଁ ସେ କହି ଯାଉଛନ୍ତି । ଗଳ୍ପ ଲେଖୁନାହାନ୍ତି । ଗପ କରୁଛନ୍ତି, ପୁଅ ଝିଅ ନାତି ନାତୁଣୀଙ୍କ ଆଗରେ । ଗପ ଗୁଡ଼ିକ କାହାଣୀ ପରି ଗୋଟେ ପରେ ଗୋଟେ ଛନ୍ଦି ଯାଉଛି । ନାତି ନାତୁଣୀଙ୍କ ମୁହଁରେ ଖାଲି ଗୋଟିଏ ପ୍ରଶ୍ନ "ତା'ପରେ" । ଏହି 'ତା'ପରେ' ଜାଣିବାର ଆଗ୍ରହ ସୃଷ୍ଟି କରିବା ହିଁ ଏ ଗପ ଗୁଡ଼ିକର ବିଶେଷତ୍ୱ । ସରଳ ଧାର୍ମିକତା, ଜଟିଳ ସରଳତା ।

'ଭାବକୁ ନିକଟ'ର ଗପ (ଗଳ୍ପ ନୁହେଁ)ର କାହାଣୀରେ ଥିବା ନାତି ନାତୁଣୀମାନଙ୍କ ଗପ ଶୁଣିବାର ଜିଦରୁ ମୁକ୍ତିର ଇଚ୍ଛା । ତାଙ୍କୁ ଭୁଲାଇବାର ଚେଷ୍ଟା । ମାତ୍ର ଗଳ୍ପ ନୁହେଁ, କାହାଣୀ ନୁହେଁ । ଗପଟିଏ ବାହାରି ଆସି "ମା'ମ ଗୋଟିଏ ଗପ କୁହ । ସଞ୍ଜ ହେଲାଣି ।" ଏଇଥିରୁ ଆରମ୍ଭ ହୁଏ ଗପ । ଘଟଣାର ଚମତ୍କାରିତା ନାହିଁ । ଶିହରଣ ନାହିଁ । ଖାଲି ନିଜ ଜୀବନର ଅଙ୍ଗେ ନିଭେଇବା କଥା । ଅଥଚ ସେ ଆତ୍ମଜୀବନୀ ବି ନୁହେଁ । କଳ୍ପନା ଓ ବାସ୍ତବର ଅଦ୍ଭୁତ ସମନ୍ୱୟ ।

ପୁଣି ଆଉ ଗୋଟିଏ କଥା ମନକୁ ଟାଣେ । ଗପ ଗୁଡ଼ିକର ଅଛିଣ୍ଡା ଗୁଣ । ସବୁ ଗପର ଗୋଟିଏ କିଛି ରହିଯିବାର ଭାବ । ବୋଧହୁଏ ଏହି ଭାବ, ଏହି ରୂପଟି ଗପର ବିଶେଷତ୍ୱ । ଏହା ଜୀବନର ସ୍ୱାଭାବିକତା ସହ ନୈମିକତାକୁ ବି ନିଜସ୍ୱ କରେ । ସବୁ ଗପ ଗୋଟିଏ ଗୋଟିଏ ମୁହୂର୍ତ୍ତର ଅନୁଭୂତି । ସବୁ ମୁହୂର୍ତ୍ତ ଜୀବନର ଅପୂର୍ଣ୍ଣ ପୂର୍ଣ୍ଣତା । ଏ ଗପ ଗୁଡ଼ିକ ତେଣୁ ଗଛକୁ କାଟି ବାଗର କରି ତହିଁରେ କୃତ୍ରିମ ରୂପ ଫୁଟାଇବା ନୁହେଁ । ଏହା ଯେମିତି ଗଛକୁ ବଢ଼ିବାକୁ ଛାଡ଼ିଦେଇ ତାର ଗଛଟିକୁ ଉପଲବ୍ଧି କରିବା । ଏହାହିଁ ଏହାର ବିଶେଷତ୍ୱ । ଏହା ଅନ୍ତ ହୁଏନି, ସରେନି । ଏହା ଚାଲିଥାଏ । ଜୀବନ ସରିବା ପର୍ଯ୍ୟ[illegible]

ଅନୁଭୂତିର ଇଲାକା ଅଳ୍ପ । ମାତ୍ର ଗଭୀର । ଗୋଟିଏ ସାଧାରଣ ଓଡ଼ିଆ ବୋହୂର ଘର ସଂସାରରେ ଘଟୁଥିବା ଘଟଣା, ଦେଖା ଦେଉଥିବା ଚରିତ୍ରଙ୍କୁ ଲେଖିକା ଆମ ଆଗରେ ଥୋଇଛନ୍ତି । ନାଟକୀୟ ଭାବରେ ନୁହେଁ । ଅତି ସରଳ ଭାବରେ । ଖୁବ୍ ଅଳ୍ପରେ । ଓଢ଼ଣୀ ତଳୁ ବୋହୂ ଟିଏ ଯେମିତି ଚୁପି ଚୁପି, ମାପି ମାପି କଥା କହୁଛି । ଅଳ୍ପରେ ସବୁକଥା ସୂଚାଇ ଦେଇଛି । ଏହି ଅଳ୍ପରେ ଅଧିକ କହିବା ସମ୍ଭବ ହୋଇଛି ଲେଖିକା କୃତିମତା (ବିଷୟ ଓ ପ୍ରକାଶ ଉଭୟ)ରୁ ମୁକ୍ତ ବୋଲି ।

"ମାନ ପଚାରେ, ଫେରିଲ ?"

ମା ହସନ୍ତି ଆଇଲୁ : "ନହେଲେ ତୁ କୁଆଡ଼ୁ ଆଣନ୍ତୁ"

ଶେଷ ବାକ୍ୟରେ ସୂଚନା ଭରପୂର । ମଣିଷର ସମ୍ପର୍କ, ଆଶା ହତାଶା ପୂର୍ଣ୍ଣି ପୂର୍ଣ୍ଣିତା ଗପଟିରେ ଫୁଟି ଉଠିଛି । ଭାଗବତର ଉଦ୍ଧୃତ ଅର୍ଥରେ ଗଭୀରତା ଆଣିଛି ।

ମୁଁ ଗପର ବିଶ୍ଳେଷଣ କରୁନାହିଁ । ଗପ ଗୁଡ଼ିକ ଏତେ ସରଳ ଯେ ପ୍ରଥମେ କିଛି ନାହିଁ ଭାବ ସୃଷ୍ଟି କରେ । ମାତ୍ର ପ୍ରକୃତରେ ତା' ନୁହେଁ । ଏଗୁଡ଼ିକ କଳାତ୍ମକ କଳା । ଆମ ଜୀବନର ହାସ୍ୟକଣ୍ଟା ରୂପ ନୁହେଁ, ସାଧାରଣ ମୁହୂର୍ତ୍ତରେ ଅଂକା ଛବି ପରି । 'ବୋଉଙ୍କୁ ଆଉ ଖଣ୍ଡିଏ ଚିଠି' ରେ ଏଇ ଭାବ ।

ଭାଷା ଖାଲି ସରଳ ନୁହେଁ । ବିଷୟ ଓ ଆବେଗ ସରଳ । ତଥାପି ଜୀବନର ଜଟିଳତାକୁ ସୂଚାଇଦିଏ । ସବୁଠୁ ବଡ଼ କଥା ଜୀବନ ପ୍ରତି, ମଣିଷ ପ୍ରତି ସମ୍ବେଦନା, ଜୀବନର ରହସ୍ୟ ସବୁ ଏ ଗପ ଗୁଡ଼ିକରେ ସ୍ଥାନ ପାଇଛି । ଲେଖିକା ସେଠି ନିଜକୁ ଜାହିର କରନାହାନ୍ତି । ଅନୁଭୂତି ଆପେ ଆପେ ନିଜକୁ ଜାହିର କରିଛି ନିରାଡ଼ମ୍ବର ସାଧାରଣ ଭାବରେ ।

ଆଂଚଳିକ ଓ ଅନୁଭୂତି ମିଶି ଜୀବନର ଟୁକୁରା ହୋଇ ଯାଇଛନ୍ତି । କଳ୍ପନା ଜଗତକୁ ନୁହେଁ ଅବା ବୁଦ୍ଧି/ଚିନ୍ତା ଜଗତକୁ ନୁହେଁ ମନଜଗତକୁ, ଏହା ମଣିଷକୁ ଟାଣିନିଏ ।

ବୁଦ୍ଧି, ଯୁକ୍ତି, ଚିନ୍ତାର କଚକଚ ଗଳ୍ପରେ ଆଜି ବହୁତ । ପ୍ରତୀକ ବି ଢେର । ଦର୍ଶନ ବି । ମାତ୍ର ମନକୁ ଛୁଇଁବା ଗପ, ଆମ ସମାଜର, ଆମ ଜୀବନର ଗପ ଖୁବ୍ କମ୍ । ଲେଖିକା ବୋଧହୁଏ ଏହି କ୍ଷୁଧାକୁ ଉପଶମ କରିବା ପାଇଁ କାହାଣୀ ନୁହେଁ, ଗଳ୍ପ ନୁହେଁ, ଗପ କହୁଛନ୍ତି । ଗୋଟେ ଗପ ଆଉ

ଗୋଟେ ଗପକୁ ଟାଣି ଆଣୁଛି । ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଜୀବନକୁ ଭିନ୍ନ ରକମ ଟିକେ ଦେଖିବାର ସୁଯୋଗ ଦେଉଛି । ଆଉ ବି ସୁଯୋଗ ଦେଉଛି ମଣିଷକୁ ଟିକେ ଭିନେ ରକମ ବୁଝିବାରେ ।

'ଭାବକୁ ନିକଟ' ଗପଟିରେ କେତେ ସାଧାରଣ କଥା ଭିତରେ ମଣିଷ ମନ ବିଶେଷତଃ ନାରୀ ମନ, ମା'ମନର ସୂକ୍ଷ୍ମତା ପ୍ରକାଶ ପାଇଛି, ତାହାହିଁ ବଡ଼ କଥା । ଏହାହିଁ ଗପ । ଜୀବନରେ ଏହା ନାଟକକୁ ଖୋଜେନି, ଅସାଧାରଣକୁ ଖୋଜେନି । ଏହା ଖୋଜେ ନିବିଡ଼ତା, ସାଧାରଣତା ଆଉ ଅନୁଭବର ଋଦ୍ଧତାରେ ଏହି ସାଧାରଣ ଘଟଣା/ଚରିତ୍ର ଗୁଡ଼ିକ ଯେତେବେଳେ ଫୁଟି ଉଠନ୍ତି ଏହି ସାଧାରଣ ଜୀବନ କେତେ ଅସାଧାରଣ ଲାଗେ, କେତେ ସୁନ୍ଦର ଲାଗେ । କେତେ ରହସ୍ୟମୟ ଲାଗେ ଏ ମଣିଷ ଆଉ ତା' ମନ । 'ସତରେ ଏତିକି ମନେଇ ଦିଅନ୍ତୁ' । ଏଇ ବାକ୍ୟଟିରେ ସମ୍ପର୍କ, ଆଦର/ଅଭିମାନ/ଈର୍ଷା ସବୁ ଏକ । ମାତ୍ର ଏଇଠି କଥାଟା ନିସ୍ୱର ଆଉ ଟିକିଏ ଆଗେଇ ଯାଇଛି । ସବୁ ଦିଅ 'ମନେଇ' । ନିଜସ୍ୱ ଭାବରେ ମନେଇ ।

ଆଜିର ଜୀବନରେ ଅନେକ ଗଳ୍ପ । ଆମ ଉପରେ ବନ୍ଧୁ ଭାବରେ ଗଳ୍ପ ବର୍ଷି ଯାଉଛି । ଟିଭି, ରେଡ଼ିଓ ବି ଗଳ୍ପ କରିବାରେ ପଛୁଇ ନାହାନ୍ତି । ତେଣୁ ଆଜି ଗଳ୍ପରେ ଋଦ୍ଧତା ପରିବର୍ତ୍ତେ ଶିହରଣ ବେଶି । କାହାଣୀ ଶୁଣିବା, ଗଳ୍ପ ପଢ଼ିବା ଭିତରେ ଯେଉଁ ପାର୍ଥକ୍ୟ ଗଳ୍ପ ପଢ଼ିବା ପୁଣି ଟିଭିରେ ଦେଖିବା ଭିତରେ ଆହୁରି ପାର୍ଥକ୍ୟ । ଏଇ ଗପ ଗୁଡ଼ିକରେ ଅଛି ଶୁଣିବାର ମଜା । କାହାଣୀର ନିରାଡ଼ମ୍ବର ମଜା । ଏ ନିରାଡ଼ମ୍ବରତାର ଦୁଇଟି ଦିଗ । ଗୋଟିଏ ଏହାର ବିଷୟ ବସ୍ତୁ ସାଧାରଣ ଘରର କଥା । ଦ୍ୱିତୀୟରେ ଅକପଟ ବର୍ଣ୍ଣନା । ଏଥିରେ କଳା ( ଗଳ୍ପ ଲେଖାର ତଥାକଥିତ କଳା ) ଆଉ ପାଚେରୀ ହୋଇ ଠିଆ ହୋଇନାହିଁ । କାଗଜ ପୃଷ୍ଠାରେ ଆମେ କାହାଣୀ ଶୁଣୁଛେ । ଜୀବନ ଶୁଣୁଛେ । ଆଉ ଶୁଣୁ ଶୁଣୁ ଅଙ୍ଗେ ନିଭଉଛେ । ଏଥିରେ ଫେରିଆସୁଛି ସେଦିନର ଗପ ଶୁଣିବାର ମଜା ।

ଏ ଗୁଡ଼ିକ ଆନନ୍ଦ ଦେଉଛି । ଆଉ ଆନନ୍ଦ ସହ ଅବବୋଧ ବି ।

—ସୌରୀନ୍ଦ୍ର ବାରିକ୍

ଲେଖିକା—ପରିଚୟ :

ଉତ୍କଳିକା ଦାସଙ୍କ ଜନ୍ମ ୧୯୩୮ ମସିହାରେ । 'ଉତ୍କଳିକା' ନାଁଟି ଉତ୍କଳ-ଭାରତୀ 'କୁନ୍ତଳା କୁମାରୀଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିଲା ; କାଳକ୍ରମେ ତାହା ପୋଷାକୀ ନାଁ ହେଲେ ଲୁଚିଯାଇଥିଲା ।

ଲେଖିକାଙ୍କ ପ୍ରଥମ ଗଳ୍ପ ଆତ୍ମପ୍ରକାଶ କରେ ପ୍ରଥମେ ୧୯୬୭ ମସିହାରେ, **ବାଉଣି ପାହାଡ** ପୃଷ୍ଠାରେ ।

ଜଣେ ଲେଖକର ଲେଖା ହିଁ ତା'ର ସର୍ବଶ୍ରେଷ୍ଠ ପରିଚୟ ବହନ କରେ ବୋଲି ଲେଖିକାଙ୍କର ବିଶ୍ୱାସ ॥

—ପ୍ରକାଶକ